ସେ ନିଜେ ମଧ୍ୟ ଲେଖା ଲେଖିରେ ମନୋନିବେଶ କରି ଥିଲେ । କିଶୋର ପାଠକମାନଙ୍କ ପାଇଁ ସ୍ମରଣୀୟ ଉପନ୍ୟାସ ମାନଙ୍କ ମୂଳ କାହାଣୀକୁ ନେଇ ନିଜ ଭାଷାରେ ଛୋଟ ଛୋଟ ବହି ଲେଖି ସେ ସୁଖ୍ୟାତି ଅର୍ଜନ କରିଥିଲେ । ଚାର୍ଲସ ଡ଼ିକେସନ୍‌ସଙ୍କ ''ଡେଭିଡ କପର୍ ଫିଲ୍‌ଡ'', ଜୁଲଭେର୍ଣ୍ଣଙ୍କ ''ଟୋଣ୍ଟି ଥାଉଜେଣ୍ଡ୍ ଲିଗ୍ ଅଣ୍ଡର ଦି ସି'', ମାର୍କ ଟ୍ୱେନ୍‌ଙ୍କ ''ଆଡଭେଞ୍ଚର ଅଫ୍ ଟମ୍ ସୟର୍'', ଜେନ୍ ଅଷ୍ଟିନ୍‌ଙ୍କ'' ପ୍ରାଇଡ୍ ଏଣ୍ଡ ପ୍ରିଜୁଡ଼ିସ୍'', ଜନ କାରୋଙ୍କ ''ମ୍ୟୁଟିନି ଅନ୍ ଦି ବାଉଣ୍ଟି'' ଓ ଓ୍ୱିଲିକ୍ କଲିନ୍‌ସଙ୍କ'' ''ଦି ମୁନ୍ ଷ୍ଟୋନ୍'' ପ୍ରଭୃତି ସ୍ମରଣୀୟ ବିଦେଶୀ ଉପନ୍ୟାସକୁ ଜିଜ୍ଞାସୁ କିଶୋର ପାଠକ ମାନଙ୍କ ପାଇଁ ସରଳ, ସାବଲୀଳ ଭାଷାରେ ସେ କେବଳ ସଂକ୍ଷେପରେ ଲେଖି ନଥିଲେ, ଫକୀର ମୋହନ ସେନାପତିଙ୍କ ''ଛମାଣ ଆଠଗୁଣ୍ଠ'' ଉପନ୍ୟାସକୁ ମଧ ପିଲାମାନେ ବୁଝିପାରିବା ଭଳି ଶୈଳୀରେ ''ପିଲାଙ୍କ ଛମାଣ ଆଠଗୁଣ୍ଠ'' ନାମରେ ରଚନା କରିଥିଲେ । ଏହା ବ୍ୟତୀତ 'ହୋମର କାହାଣୀ' ଗ୍ରୀସ୍ ଦେଶର ଉପକଥା ଓ ପୁରାଣ କାହାଣୀ, ରାମାୟଣ କାହାଣୀ, ''ଆଲିବାବା'' ଏବଂ ''ଶକୁନ୍ତଳା'' ପ୍ରଭୃତି କିଶୋର- ଗ୍ରନ୍ଥରେ ସେ ଦେଶବିଦେଶର ସ୍ମରଣୀୟ କାହାଣୀକୁ ଆକର୍ଷଣୀୟ ଶୈଳୀରେ ପରିବେଷଣ କରିଥିଲେ । ଓଡ଼ିଆ ଭାଷାରେ କିଶୋର ସାହିତ୍ୟ ଅବହେଳିତ ଅବସ୍ଥାରେ ରହିଥିବା ବେଳେ ତାଙ୍କର ଏ ଆନ୍ତରିକ ଉଦ୍ୟମ କେବଳ ଖାଲି ତାଙ୍କର ସାହିତ୍ୟ ପ୍ରତି ନୁହେଁ; କିଶୋର ପାଠକ ମାନଙ୍କ ପ୍ରତି ଜଣେ ଆଦର୍ଶ ଶିକ୍ଷକ ଭାବରେ ତାଙ୍କର ମହାନ୍ କର୍ତ୍ତବ୍ୟବୋଧର ପରିଚୟ ବହନ କରିଛି ।

ସାର୍ ଆଜି ଆଉ ଆମ ଭିତରେ ନାହାନ୍ତି; କିନ୍ତୁ ଜଣେ ଛାତ୍ରବତ୍ସଳ ଶିକ୍ଷକ ଭାବରେ ତାଙ୍କର ଅବଦାନ, ସାରସ୍ୱତ ସାଧନା କ୍ଷେତ୍ରରେ ତାଙ୍କର ଅପୂର୍ବ ନିଷ୍ଠା, ମୋ ମନ ଭିତରେ ଅମଳିନ ହୋଇ ରହିଛି, ରହିବ । ଏକା ମୋର ନୁହନ୍ତି; ସେ ଥିଲେ ତାଙ୍କର ଅଗଣିତ ଛାତ୍ର, ସାହିତ୍ୟ ରସିକ ପାଠକମାନଙ୍କ ପାଇଁ ଜଣେ ଅନୁକରଣୀୟ, ବ୍ୟକ୍ତିତ୍ୱ, ଆଦର୍ଶ ମଣିଷ ।



# କର୍ମଯୋଗୀ ଶ୍ରୀଧର ଦାସ

*ଶ୍ରୀକାନ୍ତ ପଣ୍ଡା*

ଅନେକ ଦିନ ତଳର କଥା । ଏ ଭିତରେ କେତୋଟି ଦଶନ୍ଧି ଯେ କେତେବେଳେ ବିତିଗଲାଣି ଜାଣି ହୋଇନାହିଁ । ଆଜି ପଛକୁ ଚାହିଁଲେ ସେ ସବୁ ବେଳର କଥା ଛାଇ ଛାଇ ପରି ଜଣାପଡୁଛି । କେତେ କଥା ଭୁଲି ଯାଇଛି । କେତେ କଥା ଏପରି ଘନିଷ୍ଠ ଭାବରେ ଜୀବନ ଉପରେ ଛାପ ପକାଇଛି ଯେ ହେଇଟି କାଲିପରି ଘଟିଯାଇଥିବା ପରି ସ୍ପଷ୍ଟ ମନେ ଅଛି ।

୧୯୬୭ ମସିହା ଆରମ୍ଭ କଥା । ମୁଁ ଦେଉଳ ସାହିର ସେଲ୍‌ଟରଛକ ନିକଟରେ ନୂଆ କରି ଘରତୋଳି ବାପା, ମା ଓ ପରିବାର ବର୍ଗଙ୍କ ସହ ଆସି ହାଲି ହାଲି ରହୁଥାଏ । ଅବଶ୍ୟ ଦେଉଳ ସାହି ସହିତ ମୁଁ କଲେଜରେ ପଢ଼ିଲାବେଳୁ ପରିଚିତ । ଏହି ଅଞ୍ଚଳର ବିଶିଷ୍ଟ ସମାଜସେବୀ ସେ ଯୁଗର ଡବଲ ଏମ୍.ଏ. ପାସକରି ମଧ ସେ ଆଣ୍ଠୁ ଉପରକୁ ଲୁଗା ପିନ୍ଧୁ ଥିଲେ ଓ ସମାଜର କଲ୍ୟାଣ ପାଇଁ ନିଜର ସମସ୍ତ ସ୍ୱାର୍ଥକୁ ତ୍ୟାଗକରି କୁସଂସ୍କାର ବିରୁଦ୍ଧରେ ଆଜୀବନ ଲଢ଼େଇ କରିଗଲେ । ସେ ପ୍ରାୟ ମୋ ପିତାଙ୍କ ସହିତ ସାକ୍ଷାତ୍ କରିବାକୁ ବହୁ ସମୟରେ ଆମ ସରକାରୀ ବସାଘରକୁ ଆସୁଥିଲେ । ମୋ ପିତା ଅନେକ ଛୁଟି ଦିନଗୁଡ଼ିକରେ ଲକ୍ଷ୍ମୀନାରାୟଣ ବାବୁଙ୍କୁ ତତ୍‌କ୍ଷଣାତ୍ ନିମନ୍ତ୍ରଣ କରି ଏକାଠି ଭାତ ଡାଲି ଆଦି ଭୋଜନ କରିବାରେ ଆନନ୍ଦ ନେଉଥିଲେ । ସେତେବେଳେ ଆମେ ସବୁ ଲକ୍ଷ୍ମୀନାରାୟଣ ବାବୁଙ୍କ ପାଖରେ ବସି ବହୁ କଥା ଦେଶ ସମ୍ପର୍କରେ କୌତୁହଳର ସହିତ ଶୁଣୁ ଥିଲୁ । ତାଙ୍କ ପ୍ରତି ଆମର ଶ୍ରଦ୍ଧା ଭକ୍ତି ଓ ଆଦର ଥିଲା । ସେତେବେଳେ ତାଙ୍କ ଦେଉଳସାହି ଘରକୁ ଅନେକଥର ଆସିବା ସୁଯୋଗ ମିଳିଥିଲା ।

ଯେତେବେଳେ ସେଲ୍‌ଟର ଛକରେ ଘର କରି ଆସି ରହିଲୁ ସେତେବେଳେ ଏ ଅଞ୍ଚଳ ପ୍ରତି ମୋର ତଥା ଆମ ପରିବାରର ମମତା ବହୁତ ବଢ଼ିଗଲା । ଏ ଅଞ୍ଚଳର ଅନ୍ୟତମ ବିଶିଷ୍ଟ ଶିକ୍ଷାବିତ୍ ପ୍ରବୀଣ ସାହିତ୍ୟିକ ଶ୍ରୀଧର ଦାସଙ୍କ ସହିତ ଦେଖାହେଲା । ମୋ ପିତା ଅବସର ଗ୍ରହଣ କରିଥାନ୍ତି ସରକାରୀ ଚାକିରୀରୁ । ବେଶି ସମୟ କଟାଉଥିଲେ ସାହିତ୍ୟ ସଭାରେ ତଥା ସାହିତ୍ୟ ଆଲୋଚନା କରିବାରେ । ଶ୍ରୀଧର ବାବୁ ଅନେକ ସମୟରେ ଆମଘରକୁ ଆସୁଥିଲେ । ବାପାଙ୍କ ସହିତ ବସି ସାହିତ୍ୟ ଆଲୋଚନା ହେଉଥିଲା । ଏହି ସମୟରେ ଆସିଲା କଟକ ପୌରସଭା ନିର୍ବାଚନ । ଦେଉଳସାହି, ବୀଡ଼ାନାସୀ ଓ ତୁଳସୀପୁର ଅଞ୍ଚଳକୁ ନେଇ କଟକ ପୌରସଭାର ଥିଲା ଏକ ନମ୍ବର ୱାର୍ଡ । ସହରର ଅନ୍ୟାନ୍ୟ ଅଞ୍ଚଳ ତୁଳନାରେ ଏହି ଏକନମ୍ବର ୱାର୍ଡ ଅଞ୍ଚଳ ଥିଲା ଅନୁନ୍ନତ । ବହୁ ରାସ୍ତା ପିଚୁ ନଥିଲା । ବହୁ ରାସ୍ତାରେ ବିଜୁଳି ଆଲୁଅ ନଥିଲା । ଆବଶ୍ୟକତାକୁ ଚାହିଁ ମାଇନର ସ୍କୁଲ ନଥିଲା । ହାଇସ୍କୁଲ, କଲେଜ କଥା ଉଠୁଛି କେଉଁଠି । ଆମର ଜଣେ ସାଧାରଣ ପ୍ରତିନିଧି ଓ ଜଣେ ହରିଜନ ପ୍ରତିନିଧି ଏହିପରି ଦୁଇଜଣ କାଉନସିଲର ନିର୍ବାଚିତ ପଦ୍ଧତି ଚାଲୁଥିଲା । ସେତେବେଳେ ଦେଉଳସାହିର ଲୋକପ୍ରିୟ ପ୍ରତିନିଧି ସ୍ୱର୍ଗତ ନବକୁମାର ସେଠୀ ନିର୍ବାଚିତ କାଉନସିଲର ହୋଇଥିଲେ । ଆଉଜଣେ ଏହି ଅଞ୍ଚଳ ବାହାରର ବ୍ୟକ୍ତିହିଁ ଦଳୀୟ ଟିକଟର ପ୍ରଭାବରେ ନିର୍ବାଚିତ ହୋଇଆସୁଥିଲା । ଏହି ଅବସ୍ଥାର ସମାପ୍ତି ଘଟିଲା ଯେତେବେଳେ ସ୍ଥାନୀୟ ବାସିନ୍ଦାମାନେ ନିଜ ଇଚ୍ଛାରେ ଦୁଇଜଣ ଯାକ କାଉନସିଲରଙ୍କୁ ହିଁ ନିଜ ଅଞ୍ଚଳର ବାସିନ୍ଦାଙ୍କ ମଧ୍ୟରୁ ପ୍ରଥମଥର ପାଇଁ ଦୃଢ଼ତାର ସହିତ ନିର୍ବାଚନ କଲେ । ସେତେବେଳେ ସାଧାରଣ ଶଗଡ଼ ଗାଡ଼ି ଚାଳକ ପାଣୁ ଅଜାଙ୍କ ଠାରୁ ଆରମ୍ଭ କରି ଶ୍ରମିକ ଜଗାଭାଇ, ଚିନ୍ତାମଣି ପ୍ରମୁଖ ଏକ ସ୍ୱରରେ ନିଜର ଦାବିକୁ ସାବ୍ୟସ୍ତ କଲେ । ଏ ସମସ୍ତଙ୍କ ପଛରେ ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ଦାସଙ୍କ ଦୃଢ଼ ସମର୍ଥନ ଓ ନିର୍ଭିକ ସିଦ୍ଧାନ୍ତ ହିଁ ସଫଳ କାର୍ଯ୍ୟ କରିଥିଲା ।

ପରେ ପ୍ରଫେସର ଦାସଙ୍କ ପ୍ରତ୍ୟକ୍ଷ ଆଶୀର୍ବାଦରେ ମାଇନର ସ୍କୁଲ ପ୍ରତିଷ୍ଠା ହେବା ସଙ୍ଗେ ସଙ୍ଗେ ରଘୁନାଥଜୀଉ ବିଦ୍ୟାପୀଠ, ବିଡ଼ାନାସୀର ମାଇନର ସ୍କୁଲ ପରେ ପରେ ହାଇସ୍କୁଲ ଇତ୍ୟାଦି ଏ ଅଞ୍ଚଳରେ ଗଢ଼ି ଉଠିଲା । ଶିକ୍ଷାର ପ୍ରସାର ପାଇଁ ଭିତ୍ତିଭୂମି ସ୍ଥାପିତ ହେଲା । ସ୍ୱର୍ଗତ ନବକୁମାର ସେଠୀ ସେତେବେଳେ ଅକୁଣ୍ଠିତ ଚିତ୍ତରେ ଅର୍ଥ ସାହାଯ୍ୟ ଦେଇ ରଘୁନାଥଜୀଉ ବିଦ୍ୟାପୀଠର ଜମି ଖରିଦରେ

ସାହାଯ୍ୟ କରିଥିଲେ । ମୋର ସ୍ୱର୍ଗତ ପିତା ମଧ୍ୟ ଏଥିପାଇଁ ଅର୍ଥ ଦେଇଛନ୍ତି । ମିଳିତ ଉଦ୍ୟମ ସହିତ ସାହିର ଅନ୍ୟ ବାସିନ୍ଦାମାନଙ୍କ ସାହାଯ୍ୟ ସହଯୋଗରେ ପ୍ରଥମେ ଏହି ବିଦ୍ୟାଳୟଟି ଏଠାରେ ସ୍ଥାପିତ ହୋଇପାରିଛି । ପରବର୍ତ୍ତୀ ସମୟରେ ରଘୁନାଥଜୀଉ ମହାବିଦ୍ୟାଳୟ ମଧ୍ୟ ପ୍ରତିଷ୍ଠିତ ହୋଇଛି । ଶ୍ରୀଧର ବାବୁଙ୍କ ସକ୍ରିୟ ସହଯୋଗ ଓ ଅର୍ଥଦାନ ଆଦି ଏସବୁ ଶିକ୍ଷାନୁଷ୍ଠାନକୁ ପ୍ରତିଷ୍ଠା ହେବାରେ ସାହାଯ୍ୟ ସହଯୋଗ କରିପାରିଛି ।

ତାଙ୍କ ସୁପୁତ୍ରମାନଙ୍କ ମହତ୍ତ୍ୱ ଦାନରେ ଜମି ମିଳିଛି ଓ ଦେଉଳସାହିର ଦେବୀଘର ସେଠାରେ ସର୍ବସାଧାରଣଙ୍କ ସହଯୋଗରେ ତିଆରି ହୋଇଛି ।

ଶ୍ରୀଧର ବାବୁ ଅତ୍ୟନ୍ତ ମେଳାପି ଓ ଅତି ସରଳ ଜୀବନ ଯାପନ କରୁଥିଲେ । ଶିକ୍ଷା କ୍ଷେତ୍ରରେ ତାଙ୍କର ଅବଦାନ ଖାଲି ଏ ଅଞ୍ଚଳର ନୁହେଁ ଅନେକ ସ୍ଥାନରେ ବହୁ ଭାବରେ ସାହାଯ୍ୟ କରିଛି । ବାସ୍ତବିକ୍ ଶ୍ରୀଧର ବାବୁ ଥିଲେ ଜଣେ ନିସ୍ୱାର୍ଥପର କର୍ମଯୋଗୀ । ସମସ୍ତଙ୍କର ପୂଜ୍ୟ ଓ ପରାମର୍ଶଦାତା ।



# ସାରସ୍ୱତ-ସାଧକ ଶ୍ରୀଧର ଦାସ

*ପ୍ରଫେସର ପଠାଣି ପଟ୍ଟନାୟକ*

ଶ୍ରୀଧର ଦାସ ପାଟନା ସହରରେ ବି.ଇଡ଼ି. ଟ୍ରେନିଂ ପଢୁଥାଆନ୍ତି । ସେ ଛାତ୍ର ବସ୍ଥାରେ ''ସହକାର'' ସାହିତ୍ୟ ପତ୍ରିକାର ପ୍ରତିଷ୍ଠାତା ଭାରତ ସେବକ ଲକ୍ଷ୍ମୀନାରାୟଣ ସାହୁଙ୍କ ନିକଟ ସଂପର୍କରେ ଆସିଥିଲେ । ଶ୍ରୀଯୁକ୍ତ ସାହୁ ତାଙ୍କୁ ଉତ୍ସାହିତ କରିଥିଲେ, ଓଡ଼ିଆ ସାହିତ୍ୟ ପାଇଁ କିଛି ଲେଖିବାପାଇଁ । ଏ ହେଉଛି ଚଳିତ ଶତାବ୍ଦୀର ତୃତୀୟ ଦଶକର ଓଡ଼ିଆରେ ଲେଖିବା ପାଇଁ ଶିକ୍ଷିତ ତଥା ଯୁବକମାନଙ୍କୁ ''ସହକାର'' ଉତ୍ସାହିତ କରୁଥାଏ । ଏହି ପତ୍ରିକାରେ ପାଟନା ସହରରେ ଛାତ୍ର ଥିବା ଶ୍ରୀଧର ଦାସ ଲେଖିଥିଲେ ''ନିତ୍ୱସ ଓ ସୃଜନ ବିଦ୍ୟା'' ଶୀର୍ଷକ ଏକ ଚିନ୍ତାତ୍ମକ ପ୍ରବନ୍ଧ । ପ୍ରସଙ୍ଗକ୍ରମେ ଏଥିରେ ଲେଖକ ଗୋଟାଏ ସ୍ଥାନରେ ଲେଖିଥିଲେ - ''କଷ୍ଟ ନ କଲେ କୃଷ୍ଣ ପାଇବା ଅସମ୍ଭବ ।'' ମନୁଷ୍ୟ ଜାତିର ଉନ୍ନତି ବିଧାନ କରିବାକୁ ହେଲେ ଚେଷ୍ଟା କରିବା ଦରକାର । ପ୍ରତ୍ୟେକ ଲୋକର କେତେକ ବଂଶାନୁଗତ hereditary ଗୁଣ ଥାଏ । ଏହି ଗୁଣ ଗୁଡ଼ିକ ଓ ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବ ଦ୍ୱାରା ମନୁଷ୍ୟର ରୀତିଗତି ଗଠିତ ହୁଏ । ଏହି ପ୍ରଭାବକୁ ଏପରି ନିୟନ୍ତ୍ରିତ କରିବାକୁ ହେବ, ଯେପରି ମନୁଷ୍ୟ ତାହାର ପୂର୍ବ ବଂଶଧର ଠାରୁ ଉନ୍ନତତର ହେବ । ଆମ୍ଭମାନଙ୍କର ପୂର୍ବ ପୁରୁଷ ଯାହା କରିଥିଲେ, ତାହା କରିବାଦ୍ୱାରା ଜାତି ଉନ୍ନତ ହୋଇନପାରେ, ସର୍ବଦା ଚେଷ୍ଟା କରିବାକୁ ହେବ ଯେପରି କି ଆମ୍ଭେମାନେ ପୂର୍ବପୁରୁଷଙ୍କଠାରୁ ଉଚ୍ଚତର ହେବୁ ।

''କୌଣସି ଜାତିର ସୌନ୍ଦର୍ଯ୍ୟ, ମେଧା, ବିଦ୍ୟା ଓ ବୁଦ୍ଧି, ଚେଷ୍ଟା ବିନା ସାଧିତ ହୋଇ ନପାରେ । ଜଣେ ଲୋକ ଯତ୍ନ ଓ ଅଧ୍ୟବସାୟ ଦ୍ୱାରା, ନିଜର

ବୁଦ୍ଧି ବୃତ୍ତି ଦ୍ୱାରା ନିଜକୁ ଉନ୍ନତ କରିପାରେ । ସେହିପରି ଯତ୍ନ ଓ ଅଧ୍ୟବସାୟ ଦ୍ୱାରା ଅନେକ ପୁରୁଷ (Generation) ର ଫଳ ସ୍ୱରୂପ ଆମ୍ଭେମାନେ ଗୋଟିଏ ଉଚ୍ଚଶ୍ରେଣୀର ମନୁଷ୍ୟ ପାଇ ପାରିବା ।'' (ସହକାର-୩ୟ ଭାଗ-୧୧ଶ ସଂଖ୍ୟା-ପୃ. ୩୩୯)

ଶ୍ରୀଧର ଦାସ ପୁରୀ ଜିଲ୍ଲାର କାକଟପୁରରେ ୧୯୦୧ ମସିହା ଅକ୍ଟୋବର ଚାରି ତାରିଖରେ ଏକ ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସେ ଏହି କର୍ମମୟ ସଂସାରରୁ ଚିର ବିଦାୟ ନେଇଥିଲେ ୧୯୮୮ ମସିହା ଏପ୍ରିଲ୍ ୨୪ ତାରିଖରେ । ଶ୍ରୀଯୁକ୍ତ ଦାସ ଥିଲେ ଆବାଲ୍ୟରୁ କର୍ମଯୋଗୀ ଏବଂ ଉଚ୍ଚାଭିଳାଷୀ । ଅନୁନ୍ନତ ପଲ୍ଲୀ ଅଞ୍ଚଳ ଏବଂ ଦାରିଦ୍ର୍ୟର ତୀବ୍ର କଷାଘାତ ତାଙ୍କୁ ସାଧନା ପଥରୁ ବିଚ୍ୟୁତ କରି ପାରିନଥିଲା । ନିଟଜେଙ୍କ ଜୀବନ ଦର୍ଶନରେ ସେ ଜୀବନସାରା ଅନୁପ୍ରାଣିତ ହୋଇଥିଲେ । ତାଙ୍କପରି କର୍ମଯୋଗୀ ସାଧାରଣ ପରିବାରରେ କ୍ୱଚିତ ଦେଖିବାକୁ ମିଳିବେ । ନିରବଚ୍ଛିନ୍ନ ସାଧନା ଜରିଆରେ ସେ କେବଳ ନିଜର ଭୌତିକ ଐଶ୍ୱର୍ଯ୍ୟ ଲାଭ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ ସାରସ୍ୱତ ସିଦ୍ଧିର ମଧ୍ୟ ସେ ଅଧିକାରୀ ହୋଇଥିଲେ । କର୍ମହିଁ ଥିଲା ତାଙ୍କର ତପସ୍ୟା । ଆଳସ୍ୟ କଣ ସେ ଜାଣୁ ନଥିଲେ । ସାମାନ୍ୟ ବିଶ୍ରାମ ଗ୍ରହଣ ଥିଲା ଅଗ୍ରସର ହେବାପାଇଁ ଶକ୍ତି ସଞ୍ଚୟର ଏକ ମାଧ୍ୟମ ମାତ୍ର ।

ଯେଉଁକାଳରେ ସହକାର ପୃଷ୍ଠାରେ ଯୁବକ ଶ୍ରୀଧର ଦାସଙ୍କର ଲେଖା ପ୍ରକାଶିତ ହେଉଥିଲା ସେହି ସମୟରେ ସହକାରର ଅନ୍ୟ ଲେଖକମାନଙ୍କ ମଧ୍ୟରେ ଥିଲେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ବୈକୁଣ୍ଠ ପଟ୍ଟନାୟକ, ଅନ୍ନଦାଶଙ୍କର ରାୟ, ହରିହର ମହାପାତ୍ର, ଉଦୟନାଥ ଷଡଙ୍ଗୀ,ଭଗବାନ ପତି ଓ ମାୟାଧର ମାନସିଂହ ପ୍ରଭୃତି । ପରବର୍ତ୍ତୀ କାଳରେ ଏହି ଲେଖକମାନେ ସ୍ୱନାମଧନ୍ୟ ହୋଇଛନ୍ତି । ଶ୍ରୀଯୁକ୍ତ ଦାସ ମଧ୍ୟ ନିଜର ପ୍ରତିକୂଳ ପରିବେଶ ମଧ୍ୟରେ ଲେଖନୀ ଚାଳନା କରି ଚାଲିଥିଲେ । ଇଂରେଜୀ ସାହିତ୍ୟର ଅନ୍ୟତମ ଚିନ୍ତାନାୟକ ଯୋସେଫ୍ ମାଜିନୀଙ୍କ ଲିଖିତ Duties of Man ପୁସ୍ତକର ଅନୁବାଦ ତାଙ୍କ ଦ୍ୱାରା ପ୍ରକାଶିତ ହୁଏ ସହକାର ପୃଷ୍ଠାରେ (ଷଷ୍ଠଭାଗ ଷଷ୍ଠ ସଂଖ୍ୟା) । କେବଳ ସେତିକି ନୁହେଁ, ସଂସ୍କୃତ ସାହିତ୍ୟରୁ ଅନୁବାଦ କରି ସେ ମାତୃ ସାହିତ୍ୟର ସମୃଦ୍ଧି ପାଇଁ ଉଦ୍ୟମ କରିଥିବା

ଜଣାଯାଏ । ସଂସ୍କୃତ ସାହିତ୍ୟର ବିଖ୍ୟାତ କାବ୍ୟ 'ହଂସଦୂତ'ର ପ୍ରକାଶିତ କିଛି ଅଂଶ ଏହିପରି :

''ପର୍ବତ ପ୍ରାନ୍ତେ ଶୋଭେ ତମାଳ ତରୁ
କୃଷ୍ଣ-ଶ୍ୟାମଳ-ଅଙ୍ଗ ସମ ସେ ଚାରୁ ।
ତା ଦେଖି କରି ଚିତ୍ତେ କୃଷ୍ଣ ସ୍ମରଣ
ତପ୍ତ ଶରୀରେ ଥାନ୍ତି ପୁଳନ୍ଦୀଗଣ ।
କାଳନ୍ଦୀ-ଜଳସିକ୍ତ-ସ୍ନିଗ୍ଧ-ସମୀର
ତବ ପତତ୍ର ବେଗେ ହେବ ସଞ୍ଚାର ।
ପରଶି ତାହା ତାଙ୍କ ତପ୍ତ ଶରୀର
ବେଗେ କରିବ ତାଙ୍କ ତାପ ଅନ୍ତର ।
ତହିଁ ବିରାଜେ କୃଷ୍ଣ କେଳି ସଦନ
ରସିକ ଜନ କାମ୍ୟ ନୀପ ଭବନ ।
ଦେଖି ନୟନେ ତାର ସୁନ୍ଦର ପଣ
ପୁଲକେ ନ ନାଚିବ କାହାର ମନ ।
କରିବ ତଦୁପରି ଉପବେଶନ
ଦିବ୍ୟ ଆନନ୍ଦେ ତୋର ବୁଡ଼ିବ ମନ ।
ନକଲେ ତହିଁ ଏହି ସୁଖ-ସମ୍ଭୋଗ
କ୍ରୀଡ଼ା-ଚାତୁରୀ ତୋର ବ୍ୟର୍ଥ ବିହଗ'' ଇତ୍ୟାଦି

ଲେଖକଙ୍କ ଅନୁବାଦ-କୌଶଳର ସାବଲୀଳତା ମୌଳିକ ସୃଷ୍ଟି-ବିକାଶର ପ୍ରତ୍ୟୟ ଜନ୍ମାଇଥାଏ । ଶ୍ରୀଯୁକ୍ତ ଦାସ ପ୍ରଥମରୁ ଥିଲେ ଜ୍ଞାନତପସ୍ୱୀ । ସଂସ୍କୃତ, ଇଂରାଜୀ, ଓଡ଼ିଆ ଓ ବଙ୍ଗଳା ସାହିତ୍ୟ ଅନୁଶୀଳନ କରିବାରେ ସେ ଥିଲେ ଅତ୍ୟନ୍ତ ଆଗ୍ରହୀ । ଅନ୍ୟ ସାହିତ୍ୟରୁ ମୂଲ୍ୟବାନ ରତ୍ନ ଆହରଣ କରି ସେ ମଣ୍ଡିତ କରୁଥିଲେ ମାତୃ ସାହିତ୍ୟକୁ । ସହକାରରେ (୮ମ କଳସ/ ୩ୟ ଓ ୪ର୍ଥ ଅଂଜଳି) ପ୍ରକାଶିତ ''ସ୍ୱଦେଶ ପ୍ରେମ'' କବିତାଟି ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ । ଏହି କବିତାଟି ସାର୍ ୱାଲ୍ଟର ସ୍କଟଙ୍କ ''Love of Country'' କବିତାର ଅନୁବାଦ ମାତ୍ର ।

''ଅଛି କି ଏମନ୍ତ ଜନ ଏ ଜଗତେ ?
ପାଷାଣେ ପରାଣ ବାନ୍ଧି ଅନୁବ୍ରତେ

ବଚନେ ନ ଭାଷେ ଅମୃତ ବିଶେଷ
ଏ ମୋ ଜନ୍ମଭୂମି ଏହି ମୋ ସ୍ୱଦେଶ ।
ସ୍ୱଦେଶ- ମାଧୁରୀ ନ ଭାବେ ଅନ୍ତରେ
ଅପୂର୍ବ ଆନନ୍ଦ ଚିତ୍ତାଙ୍ଗନେ ତାରେ ।
ଅଛି ଯଦି କେହି ସଂସାରେ ଏସନ
ଧିକ୍ ଶତ ଧିକ୍ ତାହାର ଜୀବନ ।
କବି ପୁଣ୍ୟକଣ୍ଠେ ଉଠେ ନାହିଁ ତାର
ସ୍ୱକୀର୍ତ୍ତି-ସଙ୍ଗୀତ-ମଧୁର-ଝଙ୍କାର ।
ଥାଉ ତାର ନାମ ଥାଉ ଉଚ୍ଚ ପଦ
ଥାଉ ତାର ଶକ୍ତି, ଅତୁଳ ସଂପଦ ।
ସବୁ ଅତି ତୁଚ୍ଛ ସବୁ ବୃଥା ସିନା,
ନ ବାଜିଲେ ହୃଦେ ଦେଶ-ପ୍ରୀତି-ବୀଣା ।''

ଏ ହେଉଛି ୧୯୨୭/୨୮ ମସିହାର କଥା । ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତ ବ୍ୟାପି ଅସହଯୋଗ ଆନ୍ଦୋଳନର ଅପୂର୍ବ ଉନ୍ମାଦନା ଖେଳାଇ ଦେଇଥାଏ । ଇଂରେଜ ସରକାରଙ୍କ ଦପ୍ତରରେ କର୍ମ କରୁଥିବା ଭାରତୀୟମାନେ ମୁକ୍ତମନରେ ସ୍ୱାଧୀନତାର ଜୟଗାନ କରିବାକୁ କୁଣ୍ଠିତ ହେଉଥିଲେ । ସେଥିପାଇଁ ବୋଧହୁଏ ଶ୍ରୀଧର ଦାସଙ୍କର କବିପ୍ରାଣ ମୌଳିକ ସ୍ୱଦେଶୀ ସଂଗୀତ ରଚନା ନ କରି ବିଦେଶୀ ସାହିତ୍ୟର ଏକ ଦେଶପ୍ରୀତିମୂଳକ ଗୀତର ଅନୁବାଦ ପ୍ରକାଶ କରିଥିଲେ । ପରୋକ୍ଷ ଭାବରେ ଏହା ପରାଧୀନ ଦେଶର ପାଠକମାନଙ୍କ ପ୍ରାଣରେ ସ୍ୱଦେଶ-ଭାବନାର ସଂଚାର କରିବ ପରା !!!

ଶ୍ରୀଧର ଦାସଙ୍କ ଜୀବନରେ କବି ହେବା ନୋହିଲା । ସେ ସଂସ୍କୃତ ''ହଂସଦୂତ''ର ଅନୁବାଦ କରିଥିଲେ ପଦ୍ୟରେ । ପାଶ୍ଚାତ୍ୟ କବି ସ୍କଟଙ୍କର "Lady of the Lake" ର ଦୁଇଟି ସର୍ଗ ଅନୁବାଦ କରିଥିଲେ । ''ସରସୀ ସୁନ୍ଦରୀ'' ନାମରେ ତାହା ସହକାରରେ ପ୍ରକାଶିତ ହୋଇଥିଲା । ମାତ୍ର ଏହି ସମୟରେ ଆଉଜଣେ ଲେଖକ ଶ୍ରୀ ଅଜୟ ଚନ୍ଦ୍ର ଦାସ ଏହି ଗ୍ରନ୍ଥର ଅନୁବାଦ ''ସର ସୁନ୍ଦରୀ'' ନାମରେ ପ୍ରକାଶ କଲେ । ଶ୍ରୀ ଅଜୟ ଚନ୍ଦ୍ରଙ୍କର ଅନୁବାଦ ଅଧିକ ସାର୍ଥକ, ସାବଲୀଳ ଓ ରସାପ୍ଲୁତ ହୋଇ ପାଠକୀୟ ଆଗ୍ରହ ବୃଦ୍ଧି କରିବାରୁ ଶ୍ରୀଧର ଦାସ କବିତା ରଚନାରେ ହାତଯଶଃ ନପାଇ ସବୁଦିନ ପାଇଁ ଏହି କ୍ଷେତ୍ରରୁ ଓହରି ଗଲେ ।

ଏହି କାଳର ସାହିତ୍ୟ ପାଣିପାଗ ବିଷୟରେ ''ସହକାର'' ପତ୍ରିକାର ଏକ ମନ୍ତବ୍ୟ ଅତ୍ୟନ୍ତ ପ୍ରଣିଧାନ ଯୋଗ୍ୟ । ଗୀତିମୟ ଓଡ଼ିଆ । ସୁତରାଂ ଓଡ଼ିଆରେ ଗଦ୍ୟର ପ୍ରଭାବ ଆଜି ପର୍ଯ୍ୟନ୍ତ ହୋଇନାହିଁ । ହେବ ନାହିଁ ପରା ... ଆମ ପାଖକୁ କବିତା ଆସୁଛି ସହସ୍ର, ଗଦ୍ୟ ଆସୁଛି ଦଶ । ସହସ୍ର କବିତାରୁ ଦଶ ମଧ୍ୟମ । ଆଉ ସବୁ ଅଧମ । ଦଶ ଗଦ୍ୟରୁ ଦଶ ଅଧମ । ଏଥିରେ କଅଣ କରିବୁ । ଅନେକ ନିର୍ଧୁମ ବଙ୍ଗଳାକୁ ଉତାରି ଦେଉଛନ୍ତି । (ସହକାର ୪ର୍ଥ ଭାଗ-୫୮୬ ପୃଷ୍ଠା ସଂଖ୍ୟା- ଟିପ୍ପଣୀ) ।

ଏହିପରି ସାହିତ୍ୟିକ ପାଣିପାଗ ଶ୍ରୀଧର ଦାସଙ୍କ ପରି କର୍ମଯୋଗୀଙ୍କୁ ବିଚଳିତ କରିବା ସ୍ୱାଭାବିକ । ଥରେ ଭାରତ ସେବକ ଶ୍ରୀଧରଙ୍କ ସଂପର୍କରେ ମନ୍ତବ୍ୟକ୍ତ କରିଥିଲେ- "He knows no rest and he will know no rest" । ଶ୍ରୀଧର ବାବୁ ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶ ପାଇଁ ଧ୍ୟାନ ଦେବାକୁ ଆରମ୍ଭ କଲେ ଏବଂ ଜୀବନସାରା ଲେଖିଚାଲିଲେ । ଅନେକ ପାଠ୍ୟ ପୁସ୍ତକ, ଗଦ୍ୟ ଅନୁବାଦ ଓ ମୌଳିକ ଗଦ୍ୟରଚନା । ସେ ଥିଲେ ଜଣେ ପ୍ରବୀଣ ଶିଶୁ ସାହିତ୍ୟ ଲେଖକ । ସେମାନଙ୍କ ପାଇଁ ସେ ଲେଖିଯାଇଛନ୍ତି ସାହିତ୍ୟ, ଇତିହାସ, ଭୂଗୋଳ ଏବଂ ଅନେକ ବ୍ୟାକରଣ ପୁସ୍ତକ । ସେହିମାନଙ୍କ ଉଦ୍ଦେଶ୍ୟରେ ସଂକଳନ କରିଛନ୍ତି ଏକାଧିକ ଅଭିଧାନ ।

ଜଣେ ବରିଷ୍ଠ ଅନୁବାଦକ ହିସାବରେ ସେ ଓଡ଼ିଆ ସାହିତ୍ୟରେ ଚିରସ୍ମରଣୀୟ ହୋଇ ରହିବେ । ଯୁକ୍ତରାଷ୍ଟ୍ର ଆମେରିକାର ପ୍ରଚାର ବିଭାଗ ଉଦ୍ଦେଶ୍ୟରେ ସେ ଅନୁବାଦ କରିଥିଲେ ''ଶାନ୍ତିପଥର ବୀର ସୈନିକ'', ''ଜର୍ଜ୍ଜ ଓ ଏଷ୍ଟିଙ୍ଗ ହାଉସ୍'', ''ମାର୍କିନ ରାଷ୍ଟ୍ରରେ ଏକ ସଂଖ୍ୟାଲଘୁ ସଂପ୍ରଦାୟ'', ''ଭିଏତନାମ ଯୁଦ୍ଧ କାହିଁକି ?'', ''ଭିଏତଙ୍ଗ ଶିବାନୀ ପଲ୍ଲୀର କଳାଚିତା ବାଘ'' । ଭାରତ ବିଖ୍ୟାତ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଅନୁରୋଧରେ ତାଙ୍କ ଦ୍ୱାରା ଅନୂଦିତ ହୋଇଥିଲା 'ଆଲିବାବା', 'ଦିବ୍ୟଚକ୍ଷୁ', 'ବୃକ୍ଷଜଗତ' । Indian Council of Historical Research ତରଫରୁ ସେ ଅନୁବାଦ କରିଥିଲେ ''ଭାରତର ଅର୍ଥନୈତିକ ଇତିହାସ'' ।

ଉଭୟ ପାଶ୍ଚାତ୍ୟ ଓ ପ୍ରାଚ୍ୟ ସାହିତ୍ୟର ବହୁଗ୍ରନ୍ଥ ଅନୁବାଦ, ମର୍ମାନୁବାଦ ଅଥବା ସ୍ୱକୀୟ ଶୈଳୀରେ କଥାରାଗ ଅବଲମ୍ବନ କରି ଶ୍ରୀଯୁକ୍ତ ଦାସ

ଲେଖିଯାଇଛନ୍ତି ଅନେକ ଗ୍ରନ୍ଥ । ଏହାର ବର୍ଣ୍ଣବୈଚିତ୍ର୍ୟ ଅତ୍ୟନ୍ତ ଉପଭୋଗ୍ୟ ଓ ଉଲ୍ଲେଖନୀୟ । ସେହି ଗ୍ରନ୍ଥମାନଙ୍କ ମଧ୍ୟରେ ସେକ୍ସପିୟର କାହାଣୀ ୩ ଖଣ୍ଡ, ଟଲଷ୍ଟୟ କାହାଣୀ ୩ ଖଣ୍ଡ, ମୋପାସାଁ କାହାଣୀ ୩ ଖଣ୍ଡ, ଜାତକ କାହାଣୀ ୪ ଖଣ୍ଡ, ମିତ୍ରଲାଭ ୨ ଖଣ୍ଡ, ମିତ୍ରଭେଦ ୨ଖଣ୍ଡ, ରବିନ ହୁଡ୍, ଅଲିଭରଟୁଇଷ୍ଟ, ଗଲିଭରର ଭ୍ରମଣ କାହାଣୀ, ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ, ଅଶୀଦିନରେ ପୃଥିବୀ ଭ୍ରମଣ, ବିଚିତ୍ର ତାବିଜ, ସମୁଦ୍ର ଗର୍ଭରେ କୋଡିଏ ହଜାର ଲୀଗ ଭ୍ରମଣ, ଟମ୍‌ସଏର, ଚେକଭ କାହାଣୀ, ଆଇଭାନ ହୋ, ଚନ୍ଦ୍ରକାନ୍ତ ମଣି, ରତ୍ନଦୀପ, ଡେଭିଡ୍ କପର ଫିଲ୍ଡ, ଟମକକାଙ୍କ କୁଟୀର, ହୋମର କାହାଣୀ, ଗର୍କି କାହାଣୀ, ଈଶପ କାହାଣୀ, ହିତ କଥା, ରମାୟଣ କାହାଣୀ, ମହାଭାରତ କାହାଣୀ, ଟାଇମ୍ ମେସିନ୍, ଶ୍ରୀ, ଅହମିକା ଓ ଭ୍ରାନ୍ତି ସହୃଦ ଭେଦ, ବିଗ୍ରହ ଓ ସନ୍ଧି, ପଞ୍ଚତନ୍ତ୍ର, ମିତ୍ରପ୍ରାପ୍ତି, କକୋଲୁକୀୟ, ମାଳବିକା-ଅଗ୍ନିମିତ୍ର ଓ ଉର୍ବଶୀ, ସ୍ୱରାବ ଓ ରୁସ୍ତମ (ପଦ୍ୟାନୁବାଦ), ବେତାଳ ପଞ୍ଚବିଂଶତି, ଶକୁନ୍ତଳା, ବାଉଣ୍ଟି ଜାହାଜରେ ବିଦ୍ରୋହ, ଋଷିଆ ଦେଶର ଲୋକ କାହାଣୀ ପ୍ରଭୃତି ଅତ୍ୟନ୍ତ ସ୍ମରଣୀୟ । ଏତଦ୍‌ବ୍ୟତୀତ ସେ ଲେଖିଛନ୍ତି ଅନେକ ଲୋକ କାହାଣୀ ଓ ଜୀବନ ଚରିତ । ଏହି ବର୍ଣ୍ଣିଳ ସାହିତ୍ୟ-ସୃଷ୍ଟି ସଂସାରରେ ବିଚରଣ କଲେ ଜଣେ କିଶୋର ପାଠକ ସମଗ୍ର ପୃଥିବୀର ଚିରନ୍ତନ ସାହିତ୍ୟ-ସମ୍ଭାର ବିଷୟରେ ପରିଚୟ ଲାଭ କରିଥାଏ ।

ଶ୍ରୀଯୁକ୍ତ ଦାସ ଥିଲେ ଆଜୀବନ ଶିକ୍ଷକ । ଦୀର୍ଘ ଚଉରାଳିଶ ବର୍ଷକାଳ ସେ ଶିକ୍ଷକତା କରିଥିଲେ ମାଇନର ସ୍କୁଲ, ହାଇସ୍କୁଲ ଠାରୁ ଆରମ୍ଭ କରି ମହାବିଦ୍ୟାଳୟ ପର୍ଯ୍ୟନ୍ତ । ପୂର୍ବତନ ବୌଦ ଗଡ଼ଜାତରେ ଶିକ୍ଷାବିଭାଗ ଅଫିସର ମଧ୍ୟ ହୋଇଥିଲେ । ଦାରିଦ୍ର୍ୟର ତୀବ୍ର କଷାଘାତ ମଧ୍ୟରେ ତାଙ୍କର ପ୍ରତିଭା ଓ ବ୍ୟକ୍ତିତ୍ୱ ଯେପରି ପରାଭବ ସ୍ୱୀକାର କରିନଥିଲା, ସ୍ୱଚ୍ଛଳତାର ଐଶ୍ୱର୍ଯ୍ୟ ମଧ୍ୟରେ ସୁଦ୍ଧା ତାହା ତିଳେହେଲେ ମୁହ୍ୟମାନ ହୋଇନଥିଲା । ସେ ଥିଲେ ଜଣେ ପ୍ରେମୀ ମଣିଷ ଓ ଛାତ୍ରବତ୍ସଳ ଅଧ୍ୟାପକ । ଅଧ୍ୟୟନ ଓ ଅନୁଶୀଳନ ଥିଲା ତାଙ୍କର ତପସ୍ୟା । ସହଯୋଗ ଓ ସଦିଚ୍ଛା ଥିଲା ତାଙ୍କର ବ୍ରତ । ସହକର୍ମୀମାନଙ୍କର ବୟସ ନିର୍ବିଶେଷରେ ସେ ଥିଲେ ଅନ୍ତରଙ୍ଗ ବନ୍ଧୁ ଓ ପରାମର୍ଶଦାତା ।

ତାଙ୍କ ନିଜ ଜୀବନର ଅମ୍ଳ-ମଧୁର ଅନୁଭୂତି ପାଠ କଲେ ଆଚମ୍ବିତ ଲାଗେ । ସେ ଲେଖିଥିଲେ – 'ଦିନରେ ସୂର୍ଯ୍ୟ ରାତିରେ ଚନ୍ଦ୍ର ଦେଖାଯାଉଥିବା

କୁଡ଼ିଆଘରେ ଧୂଳି ଶଯ୍ୟାରେ ଶୋଇବାଠାରୁ ଆରମ୍ଭ କରି ଇଷ୍ଟକ ନିର୍ମିତ ପକ୍କାଘରେ ରହିଅଛି । ଶୂନ୍ୟଦେହରେ ପ୍ରବଳଶୀତ ସହିବାଠାରୁ ଆରମ୍ଭ କରି ଶତଶତ ଟଙ୍କା ମୂଲ୍ୟର ଶାଲ ବ୍ୟବହାର କରିଅଛି । ପାଦଯାନରେ ଶତ ଶତ ମାଇଲ ଚାଲିବାଠାରୁ ଆରମ୍ଭ କରି ଘୋଡା, ହାତୀ ପ୍ରଭୃତି ବାହନ ଓ ସାଇକେଲ୍, ମଟର, ବସ, ଏରୋପ୍ଲେନ ପ୍ରଭୃତି ଯାନ ବ୍ୟବହାର କରିଅଛି ।' ତଥାପି ଶ୍ରୀଯୁକ୍ତ ଦାସ ମଣିଷଟିଏ ହୋଇ ରହିଛନ୍ତି, ମଣିଷକୁ ଭଲ ପାଇଛନ୍ତି, ମାନବିକ ସ୍ନେହ ପ୍ରୀତି ଓ ସହଯୋଗର ଫୁଲ ଫୁଟାଇଛନ୍ତି । ଅମଣିଷ ପଣିଆକୁ ଘୃଣା କରିଛନ୍ତି ଏବଂ ଅଂହକାରୀ ଅଭିମାନ ମଣିଷଠାରୁ ଚିରକାଳ ଦୂରେଇ ରହିଛନ୍ତି ।

ତାଙ୍କର ସାରସ୍ୱତ ସାଧନାପାଇଁ ଓଡ଼ିଶାର ପ୍ରାଚୀନତମ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ ତାର ହୀରକ ଜୟନ୍ତି ଉତ୍ସବରେ ଶ୍ରୀଯୁକ୍ତ ଦାସଙ୍କୁ ସମ୍ମାନିତ କରିଥିଲେ ୧୯୭୨ ମସିହା ମେ ମାସ ଆଠ ତାରିଖରେ । ଶ୍ରୀଧର ବାବୁ ୧୯୭୪ ନଭେମ୍ବର ଚଉଦ ତାରିଖରେ ସୋଭିୟେତ ଲ୍ୟାଣ୍ଡ ନେହେରୁ ପୁରସ୍କାର ଲାଭ କରି ଗୌରବାନ୍ୱିତ ହୋଇଥିଲେ । ୧୯୭୮ ମସିହା ମାର୍ଚ୍ଚମାସ ଅଠେଇଶି ତାରିଖ ଦିନ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ଏକଦା ଓଡ଼ିଶାର ଘରୋଇ କଲେଜ ଅଧ୍ୟାପକ ମହାସଂଘର ସେ ଥିଲେ ସଭାପତି । ଏଥିରୁ ତାଙ୍କର ସଂଗଠନ କୁଶଳତାର ପରିଚୟ ମିଳିଥାଏ ।

ଆଜୀବନ ଶିକ୍ଷକ ଓ ସାହିତ୍ୟସେବୀ ଶ୍ରୀଯୁକ୍ତ ଶ୍ରୀଧର ଦାସଙ୍କ ଉଦ୍ଦେଶ୍ୟରେ ସ୍ତୁତି ଅର୍ଘ୍ୟ ଅର୍ପଣ କଲାବେଳେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ଗୋଟିଏ କଥା ମନେ ପଡ଼େ –

''ମାନବ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର, କର୍ମ ଏକା ତାର ଜୀବନର ମାନଦଣ୍ଡ ।''

**ସାମ୍ବାଦିକତାରୁ ଅଧ୍ୟାପକ :**

ସେ ହେଉଛି ଉଣେଇଶିଶହ ଏକାବନ ମସିହା ଏପ୍ରିଲ ମାସର କଥା । ଖ୍ରୀଷ୍ଟ ମହାବିଦ୍ୟାଳୟରେ ଦୁଇଟି ଓଡ଼ିଆ ଅଧ୍ୟାପକ ପଦ ପାଇଁ ଇଣ୍ଟରଭିଉ ହେଉଥାଏ । ଇଚ୍ଛୁକ ପରିକ୍ଷାର୍ଥୀ ମାନଙ୍କୁ କୌଣସି ପ୍ରଶ୍ନ ପଚରା ଯାଉ ନ ଥାଏ । ସେମାନେ କେବଳ ସାଧାରଣ କ୍ଲାସରେ ପାଠ ପଢ଼ାଇବେ । ବିଚାରକ ହେବେ ତତ୍କାଳୀନ ଅଧ୍ୟକ୍ଷ ରେଭରେଣ୍ଡ ବ୍ରଜାନନ୍ଦ ମହାନ୍ତି ଏବଂ ଓଡ଼ିଆ ବିଭାଗୀୟ ମୁଖ୍ୟ ଶ୍ରୀଧର ଦାସ । ସାଧାରଣ କ୍ଲାସରେ ଛାତ୍ର ସଂଖ୍ୟା ପ୍ରାୟ ଦୁଇଶହ ପାଖାପାଖି ।

ଛାତ୍ରୀ କେହି ନଥିଲେ । ପଞ୍ଚାବନ ମିନିଟର କ୍ଲାସକୁ ଯଦି ଜଣେ ପ୍ରାର୍ଥୀ ସୁଚାରୁରୂପେ ନିୟନ୍ତ୍ରଣ କରି ଯଥାର୍ଥ ଶିକ୍ଷାଦାନ କରି ପାରିବ, ସେହି କେବଳ ମନୋନୀତ ହେବ ।

ଏହି ଇଣ୍ଟରଭିଉରେ ବିଶ୍ୱବିଦ୍ୟାଳୟ ସ୍ନାତକ ଏବଂ ଉପାଧ୍ୟୁତ୍ତର ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିବା ଶ୍ରୀନିବାସ ମିଶ୍ର ଓ ଲେଖକ ନିଜେ ମନୋନୀତ ହୋଇଥିଲେ । ଏହି ଶ୍ରୀନିବାସ ମିଶ୍ର ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ହୋଇ ଅବସର ଗ୍ରହଣ କରିଛନ୍ତି । ମୋ ପରି ଜଣେ ସାଧାରଣ ଛାତ୍ର ନିର୍ବାଚିତ ହେବା ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଥିଲା । ମୋର ଶିକ୍ଷାଦାନ ଏବଂ ବକ୍ତୃତା ଶୈଳୀରେ ମୁଗ୍ଧ ହୋଇ ଅଧ୍ୟାପକ ଶ୍ରୀଧର ଦାସ କହି ପକାଇଲେ - ''ତୁମେ ସିନା ଗୋଟିଏ କ୍ଲାସ ବୋଲି ଏପରି ଚମତ୍କାର କରି ପାରିଲ । ଆମକୁ ଯେ ସପ୍ତାହର ପଚିଶ ଛବିଶ କ୍ଲାସ ନେବାକୁ ପଡ଼େ ।''

ତାଙ୍କରି ଆଶୀର୍ବାଦରୁ ଅଧ୍ୟାପକ ହୋଇ ରହିଗଲି । ସେତେବେଳକୁ 'ପ୍ରଜାତନ୍ତ୍ର' ଦୈନିକ ସମ୍ବାଦପତ୍ରରେ ଗୋଟିଏ ବର୍ଷ ସହକାରୀ ସମ୍ପାଦକ ହିସାବରେ କାର୍ଯ୍ୟକରି ସାରିଥାଏ । ଆଉ ସେ ଆଡ଼କୁ ମୁହଁ ଫେରାଇ ନାହିଁ ।

**ସ୍ନେହ ଓ ପାଣ୍ଡିତ୍ୟର ମୂର୍ତ୍ତିମନ୍ତ ପ୍ରକାଶ :**

ବିଭାଗୀୟ ମୁଖ୍ୟ ଅଧ୍ୟାପକ ଶ୍ରୀଧର ଦାସ କଲେଜରେ ଯୋଗଦେଲା ଦିନ ମୋର ଜନ୍ମ ତାରିଖ ପଚାରିଲେ । ୧୯୨୮ ମସିହା ବୋଲି ଜାଣିଲା ପରେ ପିଠି ଥାପୁଡ଼େଇ କହିଲେ, ''ହେ ତୁମେ ପିଲାଲୋକ । ତୁମ ଜନ୍ମ ବେଳକୁ ମୁଁ ବି.ଏ. ପାସ କରି ଓଲସିଂ ହାଇସ୍କୁଲରେ ଚାକିରୀ କରି ସାରିଲିଣି ।'' ''ଆପଣ''ରୁ ''ତୁମେ'' ହୋଇଗଲି । ସେହିଦିନୁ ପୁତ୍ରର ସ୍ନେହରେ ଅନୁଗୃହୀତ ହୋଇ ରହିଲି ୧୯୬୮ ମସିହା ଜୁନ ୩୦ ତାରିଖ ପର୍ଯ୍ୟନ୍ତ, ଯେଉଁଦିନ ବିଭାଗୀୟ ମୁଖ୍ୟ ଭାବରେ ଅବସର ଗ୍ରହଣ କଲେ ।

ଅଧ୍ୟାପକ ଦାସ କେବେହେଲେ ସହକାରୀ ସହକର୍ମୀମାନଙ୍କ ଉପରେ ବିରକ୍ତ ହେବା ମୁଁ ଜାଣି ନାହିଁ । ସେ ଥିଲେ ଆମ ପାଇଁ ଅମୋଘ ଅସ୍ତ୍ର ସଦୃଶ । ଅଧ୍ୟକ୍ଷଙ୍କ ବ୍ୟକ୍ତିତ୍ୱ ବହୁ ସମୟରେ ଆମ୍ଭମାନଙ୍କ ମନରେ ଭୀତି ସଂଚାର କରୁଥିଲେହେଁ ବିଭାଗୀୟ ମୁଖ୍ୟ ତାଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଏବଂ ପ୍ରିୟପାତ୍ର ଥିବାରୁ ଆମର କୌଣସି ଆଶଙ୍କା ନଥିଲା । ଶ୍ରୀଧରବାବୁ ଥିଲେ ଜଣେ ସବ୍‌ଜାନ୍ତା ବ୍ୟକ୍ତିତ୍ୱ । ଶିକ୍ଷାଦାନ, ଅଫିସ୍ ପରିଚାଳନା, ଶିକ୍ଷା ବିଭାଗୀୟ ଆଇନର ତର୍ଜମା,

ବିଶ୍ୱବିଦ୍ୟାଳୟ ସଂକ୍ରାନ୍ତୀୟ ବିଧିବ୍ୟବସ୍ଥା ଏବଂ ସର୍ବୋପରି ଇଂରେଜୀ, ବଙ୍ଗଳା, ହିନ୍ଦୀ, ଓଡ଼ିଆ ଓ ସଂସ୍କୃତ ଭାଷାରେ ଅସାଧାରଣ ବ୍ୟୁତ୍ପତ୍ତି ପାଇଁ ମହାବିଦ୍ୟାଳୟରେ ତାଙ୍କର ଉପସ୍ଥିତି ବାରି ହୋଇ ପଡୁଥିଲା । ସେ ଥିଲେ ଏକ ଅନନ୍ୟ ସାଧାରଣ ବ୍ୟକ୍ତିତ୍ୱ । କଠୋର ପରିଶ୍ରମ କରି ସେ କଲେଜର ବହୁ ଦାୟିତ୍ୱ ତୁଲାଇ ପାରୁଥିଲେ । ତାଙ୍କ ଯୋଗୁ ଅଧ୍ୟକ୍ଷ ମହୋଦୟ ଏକପ୍ରକାର ନିଶ୍ଚିନ୍ତ ଥିଲେ କହିଲେ ଚଳେ ।

କେବଳ କଲେଜରେ ନୁହେଁ, କଲେଜ ବାହାରେ ସମାଜର ଜଣେ ଶିକ୍ଷାବିତ୍ ଓ ସାହିତ୍ୟିକ ହିସାବରେ ତାଙ୍କର ପ୍ରତିଷ୍ଠା ଓ ସ୍ୱୀକୃତି ଥିଲା ଅପ୍ରତିହତ । ସ୍ୱନାମଧନ୍ୟ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଅଧ୍ୟାପକ ବିନାୟକ ମିଶ୍ର ଏବଂ ଭାରତ ସେବକ ସମିତିର ଲକ୍ଷ୍ମୀନାରାୟଣ ସାହୁ ତାଙ୍କୁ କିପରି ସ୍ନେହ ଓ ଶ୍ରଦ୍ଧା କରୁଥିଲେ, ତାହା ଅନୁଭବ ବ୍ୟତୀତ ଭାଷାରେ ବ୍ୟକ୍ତ କରାଯାଇ ପାରିବ ନାହିଁ ।

ତାଙ୍କ ସହିତ କର୍ମ କରିବା ଥିଲା ଏକ ଚମତ୍କାର ସୁଯୋଗ । ଆଲୋଚନା ଛଳରେ ଜୀବନର ବିପୁଳ ଅନୁଭୂତି ସେ ବଖାଣି ବସୁଥିଲେ । ଆଳସ୍ୟ ଥିଲା ତାଙ୍କର ପରମ ଶତ୍ରୁ । ତେଣୁ ତରୁଣ ସହକର୍ମୀ ମାନଙ୍କୁ ଅକୁଣ୍ଠଚିତ୍ତରେ ଅଧ୍ୟୟନ ଅଧାପନା ସହିତ ଅବସର ସମୟରେ ଆଉ କିଛି ଅଧିକ ସାରସ୍ୱତ ସାଧନା ଅଥବା ଗବେଷଣା କରିବା ପାଇଁ ସେ ପ୍ରେରଣା ପ୍ରଦାନ କରୁଥିଲେ । ସେ ଥିଲେ ଏକ ଚଳନ୍ତି ଡ଼ିକ୍‌ସିନାରି । ଯେ କୌଣସି ବିଷୟରେ ଆମ ମନରେ ପ୍ରଶ୍ନ ଓ ସଂଶୟ ଉତ୍‌ଥାପିତ ହେଲେ ସେ ତାର ସଦୁତ୍ତର ଦେଇ ପକାଉଥିଲେ କିମ୍ୱା ଆମକୁ ଲାଇବ୍ରେରୀକୁ ଟାଣିନେଇ ଉଦ୍ଦିଷ୍ଟ ପୁସ୍ତକଟି ପଢ଼ିବାପାଇଁ ସୂଚନା ଦେଉଥିଲେ । ସହକର୍ମୀ ହିସାବରେ ଦୀର୍ଘ ପନ୍ଦରବର୍ଷ ଏବଂ ଅବସର ଗ୍ରହଣ ପରେ ଆଜୀବନ ତାଙ୍କ ସହିତ ଆଳାପ ଆଲୋଚନା କରି ମୁଁ ବହୁ ଭାବରେ ସମୃଦ୍ଧ ହୋଇଛି ।

**ନିଷ୍ଠାପର ଓ ନିରଳସ ଶିକ୍ଷକ :**

ଆଜୀବନ ସେ ଆଦର୍ଶ ଶିକ୍ଷକ ଭାବରେ ଜୀବନ ବିତାଇ ଆସିଥିଲେ । ମାଇନର, ସେକେଣ୍ଡାରୀ ସ୍କୁଲରୁ ଆରମ୍ଭ କରି ମହାବିଦ୍ୟାଳୟ ପର୍ଯ୍ୟନ୍ତ ସର୍ବତ୍ର ତାଙ୍କର ଶିକ୍ଷକ ଜୀବନ ସାର୍ଥକ ହୋଇଥିଲା । ବୈୟାକରଣ, ଶିଶୁ ସାହିତ୍ୟର ଲେଖକ, ଅନୁବାଦକ ଏବଂ ଶବ୍ଦକୋଷର ସଂକଳକ ଭାବରେ ତାଙ୍କର ସ୍ଥାନ ଅପୂରଣୀୟ ରହିବ । ତାଙ୍କ ଜୀବନର ଆଦର୍ଶଥିଲା ନିରଳସ ଜୀବନ ଯାପନ ଓ

ବିଦ୍ୟାନୁରାଗ । କି ପ୍ରାଚୀନ, କି ନୂତନ, ସବୁ ପ୍ରକାର ସାହିତ୍ୟ ସେ ଅନୁଶୀଳନ କରୁଥିଲେ । ଅତ୍ୟନ୍ତ ଦରିଦ୍ର ପରିବାରରେ ଲାଳିତପାଳିତ ହୋଇ ନାନା ଆର୍ଥିକ ସଂକଟର ସମ୍ମୁଖୀନ ହୋଇ ସୁଦ୍ଧା ସେ ଆବାଲ୍ୟରୁ କେବଳ ବୃତ୍ତିପାଇ ବିଶ୍ୱବିଦ୍ୟାଳୟର ଡିଗ୍ରୀ କ୍ଲାସ ପର୍ଯ୍ୟନ୍ତ ଅଧ୍ୟୟନ କରି ପାରିଥିଲେ । ଜଣେ ପ୍ରଥମ ଶ୍ରେଣୀ ଛାତ୍ରର ଯେଉଁ ଗରିମା ଏବଂ ସ୍ୱାଭିମାନ ତାହା ତାଙ୍କର ଥିଲା । ତେବେ ଉତ୍କଟ ଦାରିଦ୍ର୍ୟ ଓ ଅବହେଳାର ଶରବ୍ୟ ହୋଇଥିବା ଯୋଗୁ ସାରାଜୀବନ ସେ କିପରି ଏକ ହୀନମନ୍ୟତାର ଗ୍ଲାନି ମଧ୍ୟରେ କଷ୍ଟ ପାଉଥିଲେ । "ସୁଅ ମୁହଁର ପତର" ହେଉଛି ତାଙ୍କର ଆତ୍ମଜୀବନୀ । ଜଣେ ସାଧକର ଜୀବନକାହାଣୀ ଅତ୍ୟନ୍ତ ମାର୍ମିକ ଭାବରେ ଏଥିରେ ବର୍ଣ୍ଣିତ ହୋଇଛି ।

**ସୁଅ ମୁହଁର ପତର :**

ନିଜ ବିଷୟରେ ଆତ୍ମଚରିତର ଉପସଂହାରରେ ଶ୍ରୀଧରବାବୁ ଲେଖିଛନ୍ତି :

ମୋର ଜୀବନ ସୁଅ ମୁହଁରେ ଭାସି ଯାଉଥିବା ଏକ ପତ୍ର ଭଳି ମନେ କରି ଆସିଅଛି । ଲକ୍ଷ୍ୟହୀନ ଭାବରେ କେତେବେଳେ କେଉଁଆଡ଼େ ଭାସି ଯାଉଛି ତାହାର ସ୍ଥିରତା ନାହିଁ । ପ୍ରଥମ ବିଶ୍ୱଯୁଦ୍ଧ କାଳରେ କିରାଣୀ ହୋଇ ମେସୋପଟାମିଆ ଯିବାକୁ ଚେଷ୍ଟା କରି ନାବାଳକ ହେତୁ ବିଫଳ ହୋଇଥିଲି । ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁଙ୍କ ସାହାଯ୍ୟରେ ରେଙ୍ଗୁନର ପ୍ରସିଦ୍ଧ ଓଡ଼ିଆ ବ୍ୟବସାୟୀ G.S. Behera ମୋତେ କାଚ ଶିଳ୍ପ ଶିଖିବା ପାଇଁ ଜାପାନ ପଠାଇବାକୁ ଆଶା ଦେଇଥିଲେ ହେଁ କୌଣସି କାରଣରୁ ତାହା ସମ୍ଭବ ହୋଇ ପାରି ନଥିଲା । ଭାରତ ସେବକ ସମିତିର ସଭ୍ୟ ହେବା ପାଇଁ ଚେଷ୍ଟା କରିଥିଲି । ସେତେବେଳକୁ ମୁଁ ଗ୍ରାଜୁଏଟ୍ ହୋଇ ନ ଥିବାରୁ ଅଯୋଗ୍ୟ ବିବେଚିତ ହୋଇଥିଲି । ଏହିପରି କେତେ ଆଡ଼େ ଯେ ବିଫଳ ହୋଇଛି ତାହା କହିହେବ ନାହିଁ । ଶିକ୍ଷକ ହେବା ପାଇଁ ଯୋଗ୍ୟତା ଅର୍ଜନ କରିବା ନିମନ୍ତେ ପ୍ରଗାଢ଼ ଉଦ୍ୟମ କରି ତାହାହିଁ ହେଲି । ଏ କ୍ଷେତ୍ରରେ ମଧ୍ୟ ମୋତେ ନାନା ସ୍ଥାନକୁ ଯିବାକୁ ପଡ଼ିଥିଲା । ପରିଶେଷରେ କଟକରେ ଲାଗି ଯାଇଅଛି । କାହାର ଇଙ୍ଗିତରେ କେଉଁ ଆଡ଼କୁ ମୋର ଜୀବନ ରୂପକ ପତ୍ରଟି ଭାସି ଭାସି ଯାଉଛି, ତାହା ଜାଣି ନାହିଁ । ଜୀବନର ଶେଷ ଅବସ୍ଥାରେ ମୁଁ ନିଜକୁ ଏକାନ୍ତ ଅସହାୟ ମନେ କରୁଅଛି । ସମୟ ସମୟରେ ମୁଁ ମନେ କରେ ମୋ ଠାରୁ ବଳି ଅସହାୟ ଜୀବଜଗତରେ ନାହିଁ । ଦିନରେ

ସୂର୍ଯ୍ୟ, ରାତିରେ ଚନ୍ଦ୍ର ଦେଖାଯାଉଥିବା କୁଡ଼ିଆ ଘରେ ଧୂଳି ଶଯ୍ୟାରେ ଶୋଇବାଠାରୁ ଆରମ୍ଭ କରି ଇଷ୍ଟକ ନିର୍ମିତ ପକ୍କା ଘରେ ରହିଅଛି । ଶୂନ୍ୟ ଦେହରେ ପ୍ରବଳ ଶୀତ ସହିବାଠାରୁ ଆରମ୍ଭ କରି ଶତ ଶତ ଟଙ୍କା ମୂଲ୍ୟର ଶାଲ୍ ବ୍ୟବହାର କରିଅଛି । ପାଦ ଯାନରେ ଶତ ଶତ ମାଇଲ ଚାଲିବାଠାରୁ ଆରମ୍ଭ କରି ଘୋଡ଼ା ହାତୀ ପ୍ରଭୃତି ବାହନ ଓ ସାଇକେଲ୍, ମୋଟର ବସ, ଏରୋପ୍ଲେନ୍ ପ୍ରଭୃତି ଯାନ ବ୍ୟବହାର କରିଛି । ... ‘‘ମୁଁ ଅନେକ ସମୟରେ ନିଜକୁ ନିତାନ୍ତ ଦୁଃଖୀ ମନେ କରିଅଛି । କିନ୍ତୁ ମୋ ଠାରୁ ଯେ ଦୁଃଖୀ ନଥିବେ ବା ନାହାନ୍ତି, ତାହା କହି ହେବ ନାହିଁ । ବୋଧହୁଏ ଆଲୁଅ ଅନ୍ଧାର ପରି ସୁଖ ଦୁଃଖ ପରସ୍ପରର ପରିପୂରକ ଓ ଏହି ଦୁହିଁଙ୍କର ସହାବସ୍ଥିତି ଅଛି ।’’

ଅଧ୍ୟାପକ ଶ୍ରୀଧର ଦାସ ଆଜୀବନ ସାଧନା କରିଛନ୍ତି ସ୍ୱଚ୍ଛଳ ହେବା ପାଇଁ । ଏକ ବୌଦ୍ଧିକ ବାତାବରଣରେ ରହି ଆନ୍ତରିକ ଭାବରେ ସରସ୍ୱତୀଙ୍କର ଆରାଧନା କରିଥିଲେହେଁ ସେ ଲକ୍ଷ୍ମୀ ଦେବୀଙ୍କୁ ପୂଜା କରିବା ପାଇଁ ଆଦୌ ଅବହେଳା କରିନାହାନ୍ତି । ତେଣୁ ଜୀବନ କ୍ଷେତ୍ରରେ ଏହି ଉଭୟ ଦେବୀଙ୍କର ଅନୁଗ୍ରହ ଲାଭ କରିଛନ୍ତି, ଏହା ନିଃସନ୍ଦେହରେ କୁହାଯାଇ ପାରିବ ।

ସାହିତ୍ୟ ସାଧନା ପାଇଁ ଉତ୍କଳର ପ୍ରାଚୀନତମ ସାରସ୍ୱତ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ, ଏ ଯୁଗର ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏବଂ ସୋଭିୟେତ ନେହେରୁ ପୁରସ୍କାର ସଂସ୍ଥା ତାଙ୍କୁ ପୁରସ୍କୃତ ଅଥବା ସମ୍ମାନିତ କରିଅଛନ୍ତି । ତଥାପି ତାଙ୍କପରି ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱ ଏ କ୍ଷେତ୍ରରେ ଯେପରି ଯଶସ୍ୱୀ ହେବା ଆଶା କରା ଯାଉଥିଲା, ତାହା ସେ ହୋଇପାରି ନାହାନ୍ତି ।

**ସାହିତ୍ୟିକ ଜୀବନ :**

ପିଲାଟି ଦିନରୁ କବିଟିଏ ହେବେବୋଲି କେତେ ସ୍ୱପ୍ନ ଦେଖିଥିଲେ, ଲେଖନୀ ମଧ୍ୟ ଚଳାଇଥିଲେ । ମାତ୍ର ‘‘କବି ହେବା ନୋହିଲା ।’’ ଆତ୍ମ ଚରିତରେ ଶ୍ରୀଧର ବାବୁ ଲେଖିଛନ୍ତି - ‘‘ହାଇସ୍କୁଲରେ ପଢ଼ିଲା ବେଳୁ ଜଣେ କବି ହେବାର ଆଶା ଥିଲା । ସରସ୍ୱତୀ ପୂଜା ସମୟରେ କେତେଥର ଗୋଟିଏ ଲେଖାଁଏ କବିତା ରଚନା କରିଥିଲି । ସେ ଗୁଡ଼ିକ ଛପା ଯାଇଥିଲା । ଏପରିକି ଥରେ ସଂସ୍କୃତରେ ଗୋଟିଏ କବିତା ଲେଖି ତାହାକୁ ପଣ୍ଡିତ ଜଗନ୍ନାଥ ରଥଙ୍କ ଦ୍ୱାରା ସଂଶୋଧନ କରାଇଥିଲି ଓ ତାହା ଛପା ଯାଇଥିଲା । ‘ସହକାର’ରେ ଏବଂ ଅନ୍ୟ ମାସିକ

ପତ୍ରିକାରେ ମୋର କେତେକ କବିତା ପ୍ରକାଶ ପାଇଥିଲା । Scott ଙ୍କ Lady of the Lake କାବ୍ୟକୁ ଓଡ଼ିଆରେ ଅନୁବାଦକରି 'ସହକାର'ର ତତ୍କାଳୀନ ସମ୍ପାଦକ ବାଳକୃଷ୍ଣ କରଙ୍କୁ ଦେଇଥିଲି । ସେ ଦୁଇଟି ତାଙ୍କ ପତ୍ରିକାରେ ପ୍ରକାଶ କରିଥିଲେ । ପରେ ସେହି କାବ୍ୟର ଅନ୍ୟ ଏକ ପଦ୍ୟାନୁବାଦ ପ୍ରକାଶ ପାଉଥିବାର ଜାଣି ପରବର୍ତ୍ତୀ ସର୍ଗ ଗୁଡ଼ିକ ସେ ପ୍ରକାଶ କରି ନଥିଲେ । ପରେ ପରେ ଅନୁବାଦଟି 'ସର ସୁନ୍ଦରୀ' ନାମରେ ପ୍ରକାଶିତ ହୋଇଥିଲା । ମୋର ଅନୁବାଦର ନାମ ଥିଲା 'ସରସୀ ସୁନ୍ଦରୀ ।' ବାସ୍ତବରେ 'ସର ସୁନ୍ଦରୀ' ଅନୁବାଦଟି ମୋ ଅନୁବାଦ ଅପେକ୍ଷା ଉଚ୍ଚକୋଟିର ଥିଲା । ମୋର ପଦ୍ୟଲେଖା ଗୁଡ଼ିକ ନିମ୍ନସ୍ତରର ବୋଲି ମୁଁ ଅନୁଭବ କରିଥିଲି । ଏହାପରେ କବିତା ଲେଖା ଏକବାରେ ଛାଡ଼ିଦେଲି ।''

ଅବଶ୍ୟ ଏହାପରେ ଅଧ୍ୟାପକ ଦାସ ଗଦ୍ୟ ଲେଖିବାରେ ବିଶେଷ ମନ ଦେଇଥିଲେ । ପରବର୍ତ୍ତୀ କାଳରେ ପୃଥିବୀ ବିଖ୍ୟାତ ବହୁ ଉଚ୍ଚକୋଟିର ଉପନ୍ୟାସ ଓ ସଂସ୍କୃତ ସାହିତ୍ୟର କେତେକ ସ୍ୱନାମଧନ୍ୟ ଲେଖାକୁ ସେ ଅତ୍ୟନ୍ତ ସରଳ ଓ ସାବଲୀଳ ଭାବରେ ଅନୁବାଦ କରି ଯଶସ୍ୱୀ ହୋଇଥିଲେ । ଅର୍ଥ ମଧ୍ୟ ରୋଜଗାର କରିଥିଲେ ।

**ଶ୍ରୀଧର ବାବୁଙ୍କ ବ୍ୟକ୍ତିତ୍ୱ ଓ ଆଭିମୁଖ୍ୟ :**

ବୟସ ତାଙ୍କ ନିକଟରେ ପରାଜୟ ସ୍ୱୀକାର କରିଥିଲା । ଅତି ପରିଣତ ବୟସରେ ସୁଦ୍ଧା ସେ କଠୋର ପରିଶ୍ରମ କରି ପାରୁଥିଲେ ଏବଂ ନିରବଚ୍ଛିନ୍ନ ଲେଖା ପଢ଼ା କରି ଆନନ୍ଦ ପାଉଥିଲେ । ସେ ଥିଲେ ଜଣେ ସାର୍ଥକ ସଂସାରୀ । ପରିବାର ମଧ୍ୟରେ ସନ୍ତାନମାନଙ୍କର ବିକଶିତ ବ୍ୟକ୍ତିତ୍ୱ ପାଇଁ ସେ ଯେପରି ଯତ୍ନବାନ ଥିଲେ, ଆର୍ଥିକ ସ୍ୱଚ୍ଛଳତା ଓ ସମୃଦ୍ଧି ପାଇଁ ତାଙ୍କର ସାଧନା ମଧ୍ୟ ଆଜୀବନ ଅତୁଟ ରହିଥିଲା । ସେ ଥିଲେ ନିଜ ହାତଗଢ଼ା ମଣିଷଟିଏ । ସେଥିପାଇଁ କାହାରି ଉପରେ କେବେହେଲେ ନିର୍ଭର କରି ନାହାନ୍ତି । ଆତ୍ମଚରିତରେ ଲେଖି ଯାଇଛନ୍ତି ଏଇ ଅନୁଭୂତିର କଥାଟି - ''ଆତ୍ମନିର୍ଭରଶୀଳତା ମୋର ପ୍ରଧାନ ଗୁଣ ବା ଦୋଷ । ପୁତ୍ରମାନେ ଉଚ୍ଚ ବେତନ ଭୋଗୀ ହେଲେ ହେଁ ସେମାନଙ୍କୁ କେବେ ସାହାଯ୍ୟ ମାଗି ନାହିଁ ।''

ଏହି କାରଣରୁ ବୋଧହୁଏ ଅତ୍ୟନ୍ତ ଅମାୟିକ ଏବଂ ସ୍ନେହଶୀଳ ହେଲେହେଁ ଶ୍ରୀଧର ବାବୁ କେତେକ ପରିମାଣରେ ଅସାମାଜିକ ହୋଇ ପଡ଼ିଥିଲେ । ନିଜ

ପୁରୁଷକାର ଉପରେ ଅତ୍ୟଧିକ ଆସ୍ଥା ପୋଷଣ ହେତୁ ସଂସାର ଦୃଷ୍ଟିରେ ସେ ଜଣେ ଅଧ୍ୟାତ୍ମବାଦୀ ଥିଲେ ବୋଲି କହି ହେବ ନାହିଁ । କାରଣ ସେ କେବେ କୌଣସି ମନ୍ଦିରକୁ ଯାଇ ପ୍ରାର୍ଥନ କରିବା କେହି ଦେଖି ନାହିଁ । ଧ୍ୟାନ, ଧାରଣା, ତୀର୍ଥ ବ୍ରତରେ ସେ ବିଶ୍ୱାସୀ ନଥିଲେ । ତାଙ୍କରି ଭାଷାରେ - ''ଆହାର, ନିଦ୍ରା, ଭୟ, ମୈଥୁନ – ଏହି ସବୁ କାର୍ଯ୍ୟରେ ଜୀବନ ଅତିବାହିତ କରି ମୁଁ ସମୟ କଟାଇ ଦେଇଛି । ତେଣୁ ଖ୍ରୀଷ୍ଟିୟାନମାନଙ୍କ ପରି ଈଶ୍ୱରଙ୍କ ନିକଟରେ କ୍ଷମା ଓ ଦୟାର ପ୍ରାର୍ଥୀ ହେବା ଛଡ଼ା ମୋ ପକ୍ଷରେ ଅନ୍ୟ କି ପନ୍ଥା ଅଛି ?'' ପୁନଶ୍ଚ ଧର୍ମାଚାରଣ ବିଷୟରେ ତାଙ୍କର ମତ ହେଲା - ''ଧର୍ମ ଅର୍ଜନ ପାଇଁ ମୁଁ କେବେ ଚେଷ୍ଟା କରି ନାହିଁ ଏବଂ ଧର୍ମ ଅର୍ଜନ କରିବାର ପନ୍ଥା କ'ଣ ତାହା ଜାଣେ ନାହିଁ । ଅନେକ ଲୋକ ତଥାକଥିତ ଧର୍ମାଚାରଣ କରିଥାନ୍ତି, କିନ୍ତୁ ସେ ପ୍ରକାର ଧର୍ମାଚରଣରେ ମୋର ବିଶ୍ୱାସ ନାହିଁ । ମୁଁ କେବଳ କାର୍ଯ୍ୟ କରିବାକୁ ଚେଷ୍ଟା କରିଛି ଏବଂ ସେହି କାର୍ଯ୍ୟରେ ସଫଳ ହୁଏ ବା ବିଫଳ ହୁଏ, ତାହା ଈଶ୍ୱରଙ୍କ ନିର୍ଦ୍ଦେଶ ବୋଲି ଧରି ନେଇଛି । ଏକ ସମୟରେ ମୁଁ ପୁରୁଷାକାରକୁ ବଡ଼ ବୋଲି ମନେ କରିଥିଲି । କିନ୍ତୁ ଏବେ ଈଶ୍ୱର ନିର୍ଭରଶୀଳ ହୋଇଅଛି ।

''ତ୍ୱୟା ହୃଷୀକେଶ ହୃଦିସ୍ଥିତେନ ଯଥା ନିଯୁକ୍ତୋଽସ୍ମି ତଥା କରୋମି ।''

ବୋଧହୁଏ ଏହି ଈଶ୍ୱର ନିର୍ଭରଶୀଳତା ଜୀବନରେ ଅକ୍ଷମତା ହେତୁ ସନ୍ଧିଗ୍ଧଚିତ୍ତ ଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ । ଈଶ୍ୱର ବିଶ୍ୱାସ ଯେ ଦୁର୍ବଳ ଚିତ୍ତବୃତ୍ତିର ପରିପ୍ରକାଶ, ଏପରି ଏକ ଭାବନା ତାଙ୍କର ଅଭିମାନୀ ମନକୁ ଆଚ୍ଛନ୍ନ କରି ଦେଲା ପରେ ସାମାଜିକ ଜୀବନରେ ଅନେକ ସମୟରେ ସଂଘର୍ଷ ଓ ସଂଘାତକୁ ସାଲିସ କରି ନ ପାରି ସେ ଯେ ଦୁଃଖୀ ହୋଇ ପଡ଼ିବେ, ଏପରି ଅନୁମାନ କରିବାର ଅନେକ କାରଣ ରହିଛି ।

କିନ୍ତୁ ଏ ସବୁ ସତ୍ତ୍ୱେ ତାଙ୍କର କର୍ମଯୋଗୀ ବ୍ୟକ୍ତିତ୍ୱ ଏବଂ ଆଜୀବନ ସାଧନା ତାଙ୍କ ସଂସ୍ପର୍ଶରେ ଆସିଥିବା ଲୋକେ ସବୁଦିନ ପାଇଁ ସ୍ମରଣ କରୁଥିବେ ।



# ଶ୍ରୀଧର ଦାସ : ଏକ ସଂକ୍ଷିପ୍ତ ପରିଚିତି

(ସମୟାନୁକ୍ରମିକ ତଥ୍ୟ ପରିବେଷଣ)

*ଡକ୍ଟର ରବିନାରାୟଣ ମହାରଣା*

*ନାମ* ଶ୍ରୀଧର ଦାସ

*ପିତାଙ୍କ ନାମ* ଶ୍ୟାମା ଚରଣ ଦାସ

*ଜନ୍ମ ସମୟ* ୧୯୦୧ ମସିହା ଅକ୍ଟୋବର 'ମାସ ୪ ତାରିଖ (ଜାତକ ଅନୁସାରେ)
୧୯୦୨ ମସିହା ଅକ୍ଟୋବର ମାସ ୧ ତାରିଖ (ସ୍କୁଲ ସାର୍ଟିଫିକେଟ୍ ଅନୁସାରେ)

*ଜନ୍ମ ସ୍ଥାନ* କାକଟପୁର ଅଞ୍ଚଳର ନାଉସିରା ଗ୍ରାମ

*ଜମିଜମା* :

ପିତାଙ୍କ ମୃତ୍ୟୁବେଳକୁ (୧୯୩୯) ମୋଟ ବାର ଏକର ଜମିଥିଲା, ଯାହାକି ଏବେ ତାଙ୍କର ଭାଇ ଗଂଗାଧର ଭୋଗ କରୁଛନ୍ତି । ପଟ୍ଟା, କାଗଜ-ପତ୍ର ଇତ୍ୟାଦିରେ ଶ୍ରୀଧର ଦାସଙ୍କ ନାମ ନାହିଁ । ଷଡଯନ୍ତ୍ରର ଶିକାର ହୋଇ ସେ ସବୁ ଭାଇଙ୍କୁ ଦାନପତ୍ରରେ ଦେଇ ଦେଇଛନ୍ତି । ବର୍ତ୍ତମାନ କଟକ ସ୍ଥିତ ଦେଉଳସାହିରେ ଥିବା ଖଣ୍ଡିକ ତାଙ୍କ ସ୍ୱଅର୍ଜିତ ସମ୍ପତ୍ତି ।

*ସଂପୂର୍ଣ୍ଣ ଶିକ୍ଷାଗତ ଯୋଗ୍ୟତା* ଏମ୍.ଏ. (ଓଡ଼ିଆ)

*ପ୍ରାଥମିକ ଶିକ୍ଷା* :

ପର୍ଯ୍ୟାୟକ୍ରମେ (୧) ନିମ୍ନ ପ୍ରାଥମିକ ବିଦ୍ୟାଳୟ, କାକଟପୁର । (୨) କାକଟପୁର ଭର୍ଣ୍ଣାକୁଲାର୍ ସ୍କୁଲ, କାକଟପୁର (୩) ପୁରୀ ଜିଲ୍ଲା ସ୍କୁଲ, ପୁରୀ (୧୯୧୬-୨୧)ରେ

ଶିକ୍ଷା ଗ୍ରହଣ କରି ସ୍କୁଲ ଲିଭିଙ୍ଗ୍ ସାର୍ଟିଫିକେଟ୍ ପରୀକ୍ଷାରେ ୨ୟ ସ୍ଥାନ ରଖି ଉତ୍ତୀର୍ଣ୍ଣ ହୋଇଥିଲେ । ଗଣିତ, ଭର୍ଣ୍ଣାକୁଲାର୍ ଓ ସଂସ୍କୃତରେ ଡିଷ୍ଟିଙ୍କସନ୍ ମଧ୍ୟ ପାଇଥିଲେ । ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଅବିଭକ୍ତ ବିହାର ଓ ଓଡ଼ିଶାରେ ୨ୟ ସ୍ଥାନ ରଖି ମାସିକ ୧୫ ଟଙ୍କା ଲେଖାଏଁ ବୃତ୍ତି ମଧ୍ୟ ପାଇଥିଲେ । ଏଇ ସ୍କୁଲ ଲିଭିଙ୍ଗ୍ ସାର୍ଟିଫିକେଟ୍ ପରୀକ୍ଷା ଓ ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଉଭୟେ ୧୯୨୨ ମସିହାରେ ହୋଇଥିଲା ।

*କଲେଜ ଶିକ୍ଷା* :

୧୯୨୨ ମସିହାରେ ବିହାର ଇଞ୍ଜିନିୟରିଂ ସ୍କୁଲରେ ବିଦ୍ୟାରମ୍ଭ । ମାତ୍ର ଇଞ୍ଜିନିୟରିଂ ପାଠରେ ମନ ନଲାଗିବାରୁ ବିହାର ନ୍ୟାସନାଲ୍ କଲେଜ୍, ବାଙ୍କିପୁର (ବିହାର) ରେ ଆଇ. ଏ. ଶ୍ରେଣୀରେ ନାମ ଲେଖାଇ କଲେଜ୍ ପାଠପଢ଼ା ଆରମ୍ଭ । ଏହି ସମୟରେ ଶ୍ରୀଧର ଦାସଙ୍କ ସହପାଠି ଥିଲେ ପ୍ରମଥ ନାଥ ବାନାର୍ଜୀ । ଉପର ଶ୍ରେଣୀରେ ଯେଉଁମାନେ ପଢୁଥିଲେ, ସେମାନଙ୍କ ମଧ୍ୟରୁ ଅନ୍ନଦା ଶଙ୍କର ରାୟ (ବି.ଏ. ଶ୍ରେଣୀର ଛାତ୍ର), ଶରତ ଚନ୍ଦ୍ର ମୁଖାର୍ଜୀ (ବି.ଏ. ଶ୍ରେଣୀର ଛାତ୍ର), କରୁଣାକର କର (ସଂସ୍କୃତରେ ଏମ୍.ଏ. କରୁଥିବା ଛାତ୍ର) ପ୍ରମୁଖଙ୍କ ସହିତ ଶ୍ରୀଧର ଦାସଙ୍କ ଆତ୍ମୀୟତା ଥିଲା ।

ପ୍ରଥମ ବାର୍ଷିକ ପରୀକ୍ଷା ଶେଷକରି ଗ୍ରୀଷ୍ମ ଛୁଟିରେ ସେ ଘରକୁ (ପୁରୀ) ଆସନ୍ତି । ଏଇଠାରେ ଦୁଇଜଣ ଆମେରିକାନ୍ ମହିଳାଙ୍କୁ ଦୁଇମାସ ପାଇଁ ଓଡ଼ିଆ ଟ୍ୟୁସନ କରନ୍ତି । ପ୍ରଥମ ୧୦ ଦିନର ପଢ଼ା ବାବଦକୁ ସେ ସେତେବେଳେ ପାଇଥିଲେ ଟ ୪୦ ଯାହାକି ଗୋଟିଏ ସବ୍‌ଡେପୁଟିର ଦରମା ସଙ୍ଗେ ସମାନ ଥିଲା । ୧୯୨୪ ମସିହାରେ ଶ୍ରୀଧର ଦାସ ଆଇ.ଏ. ପରୀକ୍ଷାରେ ଦ୍ୱିତୀୟ ସ୍ଥାନରେ ଉତ୍ତୀର୍ଣ୍ଣ ହୁଅନ୍ତି ।

*ବିବାହ ବନ୍ଧନ* :

ଆଇ.ଏ. ପାସ୍ କରିବା ପରେ ପରେ ବିବାହ ବନ୍ଧନରେ ସେ ଛନ୍ଦି ହୋଇ ଯାଆନ୍ତି । ପତ୍ନୀଙ୍କ ନାମ ଇନ୍ଦୁମଣି ଦେବୀ । ଶ୍ୱଶୁର ଘର ସେହି ପୁରୀ ପାଖାପାଖି ଥିଲା । ସମୟ ୧୯୨୪ ମସିହା ।

*କର୍ମମୟ ଜୀବନର ଶୁଭାରମ୍ଭ* :

ଆର୍ଥିକ ଅନଟନ ଯୋଗୁଁ ସେ ଚାକିରୀ କରିବାକୁ ବାଧ୍ୟ ହୁଅନ୍ତି ।

*୧ମ ପର୍ବ :*

୧) ବୀର ନରସିଂହପୁର ବିଶ୍ୱନାଥ ମି.ଇ. ସ୍କୁଲରେ ୯ମାସ ପାଇଁ ଖାଲି ଥିବା ପ୍ରଧାନ ଶିକ୍ଷକ ଚାକିରୀରେ ନିଯୁକ୍ତି ପାଆନ୍ତି । ଏହି ବିଦ୍ୟାଳୟଟି ଆଠଗଡ଼ର ରାଜା ବିଶ୍ୱନାଥ ଦେବ ବର୍ମାଙ୍କ ବଦାନ୍ୟତାରେ ନିର୍ମିତ ହୋଇଥିଲା । ଏଠାରେ ଶ୍ରୀଧର ଦାସଙ୍କ ଦରମା ଥିଲା ମାସିକ ଚାଳିଶ ଟଙ୍କା ।

୨) ଏହାପରେ କାକଟପୁର ମାଇନର ସ୍କୁଲରେ ହେଡ୍‌ମାଷ୍ଟର ରୂପେ କାର୍ଯ୍ୟ କରନ୍ତି । ୧୯୨୭ ମସିହାରେ ସେ ଏଲ.ଟି. ପଢ଼ିବା ପାଇଁ ଦରଖାସ୍ତ କରନ୍ତି । ଏହି ପାଠ ପଢ଼ିବା ପାଇଁ ନ୍ୟୁନତମ ଯୋଗ୍ୟତା ଥିଲା ଆଇ.ଏ.ପାଶ । ମାତ୍ର ସେତେବେଳେ ବି.ଏ. ବା ଏମ୍.ଏ. ପିଲାମାନେ ମଧ୍ୟ ଏହି ପାଠ ପଢ଼ିବା ପାଇଁ ଆବେଦନ କରିଥିବାରୁ ଶ୍ରୀଧର ବାବୁ ଏହି ବର୍ଷ ସେ ଏଲ.ଟି. ପାଠ ପଢ଼ିବାରୁ ବଞ୍ଚିତ ହେଲେ । ପରବର୍ଷକୁ ଏଲ.ଟି. ଉଠିଗଲା । ତା'ସ୍ଥାନରେ ନୂଆ ପାଠ ରହିଲା ଡ଼ି.ଇଡ଼ି. । ଏହି ପାଠ ପାଇଁ ନିମ୍ନତମ ଯୋଗ୍ୟତା ଥିଲା ବି.ଏ. ପାଶ୍ ।

*ଶିକ୍ଷା :*

ଇତି ମଧ୍ୟରେ ଶ୍ରୀଧର ଦାସ ମାର୍ଚ୍ଚ, ୧୯୨୭ ଓ ସେପ୍ଟେମ୍ବର, ୧୯୨୮ ମସିହାରେ Half Yearly Teacher's Certificate Examination ଦେଇ ସଫଳତାର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ତା ୨-୫-୧୯୨୮ ଠାରୁ ତା ୧୧-୫-୧୯୨୮ ପର୍ଯ୍ୟନ୍ତ ସ୍କାଉଟ୍ ଟ୍ରେନିଂ ନେଇଥିଲେ ।

*ସପ୍ଲିମେଣ୍ଟାରୀ :*

୧୯୨୮ ମସିହାରେ ବି.ଏ. ପରୀକ୍ଷା ଦେଇ ପାସ୍ କରନ୍ତି । ବି.ଏ. ପାସ ପରେ ଆଉ ମାଇନର ସ୍କୁଲରେ ରହିବାକୁ ତାଙ୍କର ଇଚ୍ଛା ହେଲା ନାହିଁ । ଅନ୍ୟପକ୍ଷରେ ସେ ସେତେବେଳେ କେତେକଙ୍କ ସହିତ ଅପ୍ରିୟ ହୋଇ ଉଠିଲେ । ତେଣୁ କାକଟପୁର ଏମ.ଇ. ସ୍କୁଲ ଛାଡ଼ି ଦେଲେ ।

*କର୍ମମୟ ଜୀବନର ୨ୟ ପର୍ବ :*

୧୯୨୮ ମସିହାରେ ସ୍ଥାନୀୟ ଜମିଦାର ଦଶରଥ ପଟ୍ଟନାୟକଙ୍କ ପୃଷ୍ଠପୋଷକତାରେ ନୂଆହୋଇ ପ୍ରତିଷ୍ଠିତ ହାଇସ୍କୁଲରେ ସହକାରୀ ଶିକ୍ଷକ ଭାବେ ନିଯୁକ୍ତି । ଦରମା ମାସିକ ଟ ୭୦ କିନ୍ତୁ ସ୍ୱାକ୍ଷର କରାଯାଉଥିଲା ମାସିକ ୯୦ ଟଙ୍କା ।

*ଶିକ୍ଷା :*

୧୯୨୯ ମସିହାରେ ୯ ମାସ ପାଇଁ ଡି.ଇଡ଼ି. ଟ୍ରେନିଂ ପାଇଁ କଟକ ଟ୍ରେନିଂ କଲେଜ୍ (ବର୍ତ୍ତମାନର ରାଧାନାଥ ଆଇ.ଏ.ଏସ୍.ଇ., କଟକ) ରେ ଅଧ୍ୟୟନ । ଅଧ୍ୟୟନ କାଳରେ ପୁଣିଥରେ ସ୍କାଉଟ ଟ୍ରେନିଂ (Re-Examination Training) । ୧୯୩୦ ମସିହା, ଅପ୍ରେଲ ମାସରେ ଡି.ଇଡ଼ି. ପରୀକ୍ଷାରେ ଉତ୍ତୀର୍ଣ୍ଣ ।

ଶିକ୍ଷାର ପରିସମାପ୍ତି ପରେ ପୁନଶ୍ଚ ୧୯୩୦ ମସିହାରେ ଓଳସିଂହ ହାଇସ୍କୁଲରେ ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ରୂପେ ନିଯୁକ୍ତି । ଏତେବେଳକୁ ସ୍କୁଲରେ ଏକରକମ ଅଶାନ୍ତରୁ ଶାନ୍ତ ପରିବେଶକୁ ଯିବାପାଇଁ ତାଙ୍କ ଭିତରେ ଥିବା ଅଦମ୍ୟ ଲାଳସା ଏଇଠି ତାଙ୍କ ଜୀବନରେ ପୁଣି ଗୋଟିଏ ମୋଡ଼ ସୃଷ୍ଟି କଲା ।

*କର୍ମମୟ ଜୀବନର ୩ୟ ପର୍ବ :*

୧୯୩୦ ମସିହାରେ ବଉଦଠାରେ ଥିବା 'କିଙ୍ଗ ଏଡ଼ଵାର୍ଡ ସପ୍ତମ' ସ୍କୁଲରେ ଟ୍ରେନିଂ ପ୍ରାପ୍ତ ଗ୍ରାଜୁଏଟ୍ ହେଡ୍‌ମାଷ୍ଟର ରୂପେ କାର୍ଯ୍ୟଭାର ଗ୍ରହଣ । ମାସିକ ବେତନ ଟ. ୮୦-୮-୧୨୦ । ରହିବା ପାଇଁ ଘର ଇତ୍ୟାଦି ମାଗଣା । ରାଜାଙ୍କ ଇଚ୍ଛାକୁ ପୂରଣ କରିବାପାଇଁ ଏଇଠି ଶ୍ରୀଧର ଦାସ ନିଜ ସ୍କୁଲଟିକୁ ହାଇସ୍କୁଲରେ ପରିଣତ କରିବାପାଇଁ ଅକ୍ଲାନ୍ତ ଚେଷ୍ଟା କରନ୍ତି । ସଫଳ ହୁଅନ୍ତି ମଧ୍ୟ । ଫଳରେ ବଉଦରେ ସେହି ସ୍କୁଲଟି King Edward VII High School ନାମରେ ପରିଣତ ହେଲା । ଏବେ ଏହାର ନାମ ଯୋଗୀନ୍ଦ୍ର ଦେବ ହାଇସ୍କୁଲ ହୋଇଅଛି ।

ରାଜା ଷ୍ଟେଟରେ ଶିକ୍ଷାର ବିସ୍ତାର ପାଇଁ ଶ୍ରୀଧର ଦାସଙ୍କୁ Education Officer ଭାବରେ ନିଯୁକ୍ତି ପ୍ରଦାନ କରନ୍ତି । ମାସିକ ବେତନ ଟ. ୧୦୦-୨୦୦, ଗସ୍ତ ଖର୍ଚ୍ଚ ମାସିକ ଟ. ୨୦ । ଏଇ ସମୟରେ ଶ୍ରୀଧର ଦାସ ରାଜ ବାଟିରେ ରାଜାସାହେବ ପିତା ଯୋଗୀନ୍ଦ୍ର ଦେବଙ୍କ ନାମାନୁସାରେ ଏକ ଲାଇବ୍ରେରୀ ପ୍ରତିଷ୍ଠା କରାଇଥିଲେ ।

*ସନ୍ତାନ ଲାଭ :*

ଏହି ବଉଦ ରହଣି କାଳରେ ଅର୍ଥାତ୍ ୧୯୩୧ରେ ପ୍ରଥମ ଝିଅ ଜନ୍ମ ନେଇଥିଲା ଏବଂ ୧୯୩୩ ରେ ଗୋଟିଏ ପୁଅ ଜନ୍ମ ହୋଇଥିଲା । ପୁଅର ନାମ ଥିଲା ରାଧାକୃଷ୍ଣ, ଝିଅର ନାମ ବିଷ୍ଣୁପ୍ରିୟା । ଏହି ସମୟରେ ଶ୍ରୀଧର ଦାସ

ଏମ୍.ଇ.ଡ଼ି. ପଢ଼ିବାକୁ ଇଚ୍ଛା ପ୍ରକାଶ କରନ୍ତି । ରାଜ କର୍ମଚାରୀ ଓ ରାଜା ସାହେବଙ୍କ ସହ ଏହି ସଂକ୍ରାନ୍ତରୁ ଯେଉଁ ମନୋମାଳିନ୍ୟ ସୃଷ୍ଟି ହୁଏ, ତାହା କ୍ରମଶଃ ବିଭିନ୍ନ ଆନୁସଙ୍ଗିକ ଘଟଣାକୁ ମଧ୍ୟ ପ୍ରଭାବିତ କରେ । ଫଳରେ ଷ୍ଟେଟ୍‌ର ଏଜୁକେଶନ ଅଫିସର ପଦବୀରୁ ସେ ଇସ୍ତଫା ଦିଅନ୍ତି ।

*କର୍ମମୟ ଜୀବନର ଚତୁର୍ଥ ପର୍ବ* :

ଏହି ସମୟରେ ଶ୍ରୀଧର ଦାସ ନିଜ ଜୀବନର ଭୁଲ ସ୍ୱୀକାର କରିଛନ୍ତି । କିଛି ଅନୁତାପ ମଧ୍ୟ କରିଛନ୍ତି । କାରଣ ବଉଦ ଷ୍ଟେଟ୍‌ର ଏଜୁକେଶନ ଅଫିସର ପଦବୀରୁ ଇସ୍ତଫା ଦେଇ ସେ ପୁଣି ଓଳସିଂହ ଦାଶରଥି ହାଇସ୍କୁଲରେ ହେଡ୍‌ମାଷ୍ଟ୍ର ରୂପେ କାର୍ଯ୍ୟଭାର ଗ୍ରହଣ କରନ୍ତି । ମାସିକ ଦରମା ଟ. ୧୨୦ । ଏଠାରେ ୧ ବର୍ଷ କାର୍ଯ୍ୟ କରି ସେ ଚାକିରୀ ଛାଡ଼ିଲେ ।

*କର୍ମମୟ ଜୀବନର ୫ମ ପର୍ବ* :

୧୯୩୫ ମସିହାରେ ବାଣପୁର ହାଇସ୍କୁଲରେ ଶିକ୍ଷକତା ମାସିକ ଦରମା ୭୦ ଟଙ୍କା ।

*ସନ୍ତାନ ହାନି* :

ଏହି ବାଣପୁରର ରହଣି କାଳରେ ପ୍ରଥମ ପୁତ୍ର ରାଧାକୃଷ୍ଣର ପ୍ରାଣହାନି ଘଟେ । ସହ କର୍ମଚାରୀଙ୍କ ସହ କିଛି ମନାନ୍ତର । ଆତ୍ମସମ୍ମାନର ଖାତିରରେ ବାଣପୁର ସ୍କୁଲ ତ୍ୟାଗ । ବାଣପୁରରେ ଚାକିରୀ କାଳ ଥିଲା ୬ ବର୍ଷ । ସେ ବାଣପୁର ହାଇସ୍କୁଲ ତ୍ୟାଗ କରିଥିଲେ ୧୯୪୨ ମସିହାରେ ।

*ସନ୍ତାନ ଲାଭ* :

୧୯୩୬ ରେ ଦ୍ୱିତୀୟ ପୁତ୍ର ଜଗନ୍ନାଥ ପ୍ରସାଦ, ୧୯୩୯ ରେ ୩ୟ ପୁତ୍ର କୃଷ୍ଣ ପ୍ରସାଦ ଏବଂ ୧୯୪୨ ରେ ୪ର୍ଥ ପୁତ୍ର ରଘୁନାଥ ପ୍ରସାଦର ଜନ୍ମ ।

*ସ୍ୱଅର୍ଜିତ ସଂପତ୍ତି* :

ଏହି ସମୟକୁ ପ୍ରାୟ ୮/୧୦ ମାଣ ଜମି ସେ କ୍ରୟ କରିଥିଲେ ।

*ଶିକ୍ଷା* :

୧୯୪୨ ମସିହାରେ ଅବସର କାଳରେ ଘରେ ପଢ଼ି ଓଡ଼ିଆରେ ଏମ.ଏ.ପରୀକ୍ଷା ଦେଇ ୨ୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୁଅନ୍ତି ।

*କର୍ମମୟ ଜୀବନର ୬ଷ୍ଠ ପର୍ବ* :

୧୯୪୨ ମସିହାରେ ବାଣପୁର ତ୍ୟାଗ ପରେ ବିଭିନ୍ନ ସ୍କୁଲରେ ଶିକ୍ଷକତା

୧) ଖଣ୍ଡମଉଜା ହାଇସ୍କୁଲ
୨) ବହଡ଼ାଗୋଡ଼ା ହାଇସ୍କୁଲ
୩) ହରିହରପୁର ଏକାଡେମୀ
୪) କୋରୁଆ ହାଇସ୍କୁଲ
୫) ଶ୍ରୀକୃଷ୍ଣ ଏକାଡ଼େମୀ

*ସ୍ୱଅର୍ଜିତ ସଂପତ୍ତି* :

୧୯୪୩ ରୁ ୧୯୪୮ ପର୍ଯ୍ୟନ୍ତ ଜଗତସିଂହପୁରରେ ରହଣି କାଳରେ କିଛି ସଂପତ୍ତି ଅର୍ଜନ କରିଥିଲେ ।

*କର୍ମମୟ ଜୀବନର ୭ମ ପର୍ବ* :

୧୯୪୮ ମସିହାରେ P.S.C. ତରଫରୁ ମନୋନୀତ ହୋଇ ସେ ରେଭେନ୍‌ସା ମହାବିଦ୍ୟାଳୟରେ ନିଯୁକ୍ତି ପାଆନ୍ତି । ମାତ୍ର ସରକାରୀ ଚାକିରୀ ଲୋଭକୁ ପ୍ରତ୍ୟାଖାନ କରି ସେ ସେତେବେଳେ ଉତ୍କଳ ଖ୍ରୀଷ୍ଟିଆନ୍ କଲେଜ୍ (ବର୍ତ୍ତମାନର ଖ୍ରୀଷ୍ଟ ମହାବିଦ୍ୟାଳୟ) ରେ ଓଡ଼ିଆ ଅଧ୍ୟାପକ ରୂପେ ଯୋଗ ଦିଅନ୍ତି । ୧୯୪୮ ମସିହାରେ ପ୍ରଥମ କରି ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅନର୍ସ କ୍ଲାସ ଖୋଲା ହୋଇଥିଲା । ଉତ୍କଳ ଖ୍ରୀଷ୍ଟିଆନ୍ କଲେଜ୍‌ରେ ତାଙ୍କର ଚାକିରୀ କାଳ ୧୯୪୮ ମସିହାରୁ ୧୯୬୮ ମସିହା, ୨୦ ବର୍ଷ ।

*ଅବସରକାଳୀନ ଜୀବନ* :

୧୯୭୮ ମସିହା ବେଳକୁ କ୍ରମଶଃ ଦୃଷ୍ଟିଶକ୍ତି କ୍ଷୀଣ ହୋଇ ଆସେ, ୧୯୮୦ ବେଳକୁ ଦୃଷ୍ଟି ଶକ୍ତି ନଷ୍ଟ ହୋଇଯାଏ ।

*ମୃତ୍ୟୁ* ୧୯୮୮ ମସିହା ଅପ୍ରେଲ ମାସ ୨୪ ତାରିଖ ।

*ବେଶଭୂଷା* ଅତ୍ୟନ୍ତ ସାଧାରଣ, ଧଳା ପଞ୍ଜାବୀ ଓ ଧୋତି, ଆଖିରେ ଚଷମା ।

*ପ୍ରିୟ ପୁସ୍ତକ :*

୧) ପୁରୀ ଜିଲ୍ଲାସ୍କୁଲରେ ପାଠ ପଢୁଥିବା ବେଳେ ପୁରସ୍କାର ସ୍ୱରୂପ ପାଇଥିବା ବହି ଯେପରି ରାଧାନାଥ ଗ୍ରନ୍ଥାବଳୀ, ମଧୁସୂଦନ ଗ୍ରନ୍ଥାବଳୀ, ଗଙ୍ଗାଧରଙ୍କ 'ପଣୟ ବଲ୍ଲରୀ', 'ତପସ୍ୱିନୀ', 'ଉତ୍କଳ ଲକ୍ଷ୍ମୀ', ଚିନ୍ତାମଣି ମହାନ୍ତିଙ୍କ 'ବିକ୍ରମାଦିତ୍ୟ' ପ୍ରଭୃତି ଓଡ଼ିଆ ବହି ।

୨) ଇଂରାଜୀ ପୁସ୍ତକ ଭାବରେ Lamb's Tales from Shakespeare; Miss Milford ଙ୍କର Our Village, ଲାଲ୍ ବିହାରୀ ଦେ'ଙ୍କର Bengal Peasant Life ଓ Folk tales of Bengal.

୩) ଲାଇବ୍ରେରୀରେ ଥିବା ବହିରୁ Burke's Speeches on the Impeachment of Warren Hastings, R. Hagard ଙ୍କର 'She', 'Confession of a Thug', 'Tales from Indian Chivalry', 'Smile's 'Character' ପ୍ରଭୃତି ।

*ଜୀବନର ଅନ୍ୟତମ ଦିଗ :*

ହୋମିଓ ପାଥି ଚିକିତ୍ସା ପଦ୍ଧତିରେ ଗଭୀର ଜ୍ଞାନ ଓ ଆସ୍ଥା ।

*ଜୀବନର ମଧୁମୟ ସ୍ମୃତି :*

୧୯୨୧ ବେଳକୁ ମହାତ୍ମାଗାନ୍ଧି ଆସିଥାନ୍ତି ଓଡ଼ିଶାକୁ । ସାକ୍ଷୀଗୋପାଳରେ ସଭା ହେବ । ମହାତ୍ମାଙ୍କୁ ଦେଖିବା ପାଇଁ ସେ ଦୀର୍ଘ ୩୫ ମାଇଲ୍ ବାଟ ଚାଲିଚାଲି ଯାଇ ପହଞ୍ଚିଲେ ଏବଂ ସେଠାରେ ମହାତ୍ମାଙ୍କୁ ଦେଖିଥିଲେ ଏବଂ ତାଙ୍କ ଭାଷଣ ଶୁଣିଥିଲେ ।

*ଜୀବନର ଅତୃପ୍ତ ଇଚ୍ଛା :*

୧) ଇଂଜିନିୟରିଂ ପାଠରେ ନାମ ଲେଖାଇ ପାଠ ଛାଡ଼ିଥିଲେ ବୋଲି ଅବଶୋଷ ।

୨) ବହୁ ଚେଷ୍ଟା କରି ମଧ କବିଟିଏ ହୋଇ ପାରିଲେ ନାହିଁ ।

(ବୋଧହୁଏ ତାଙ୍କର ଏହି ଅପୂର୍ଣ୍ଣ ଇଚ୍ଛା) ତାଙ୍କର ଯୋଗ୍ୟତମ ପୁତ୍ର ମାନଙ୍କଠାରେ ପୁଣି ଅଙ୍କୁରିତ ହେଲା । ପୁତ୍ରମାନେ ତାଙ୍କ ସ୍ୱପ୍ନକୁ ନିଜ ଭିତରେ ଚରିତାର୍ଥ କଲେ । ଆଜି ଜଗନ୍ନାଥ ପ୍ରସାଦ ଆନ୍ତର୍ଜାତିକ ସ୍ତରରେ ଜଣେ ସ୍ୱନାମଧନ୍ୟ କବି ଓ ରଘୁନାଥ ପ୍ରସାଦ ଜଣେ ସୁଦକ୍ଷ ତଥା ସଫଳ ଇଂଜିନିୟର ।

*ଜୀବନର ଦୁଃଖ :*

ସମସ୍ତଙ୍କର ମଙ୍ଗଳ କାମନା କରୁକରୁ ବି ଅନେକଙ୍କ ଦ୍ୱାରା ପ୍ରତାରିତ ହୋଇଛନ୍ତି । ଏପରିକି ନିଜ ରକ୍ତର ଭାଇ ଗଙ୍ଗାଧର ମଧ୍ୟ ଜାଲ୍ କରି ସମସ୍ତ ପୈତୃକ ସଂପତ୍ତିକୁ ନିଜ ନାମରେ କରାଇ ନେଇଥିଲେ । ପଟା-ପାଉତି-କାଗଜ ପତ୍ର ସବୁଥିରୁ ତାଙ୍କ ନାମ ଜାଲ୍‌ରେ ଉଠାଇ ନିଆଯାଇଥିଲା ।

*ଜୀବନର ଭଲଗୁଣ :*

ସ୍ନେହୀ ମଣିଷ । ସହଜରେ ଅନ୍ୟକୁ ବିଶ୍ୱାସ କରିଥାନ୍ତି । ସତ୍ୟ ପ୍ରିୟ, ନିର୍ଭୀକ, ପରୋପକାରୀ, ଛାତ୍ର ବତ୍ସଳ । ଏପରିକି ନିଜେ ଛାତ୍ରମାନଙ୍କୁ ଡାକି ଚାକିରୀ ଦେଇଛନ୍ତି । ଏହି ଭଳି ଛାତ୍ରମାନଙ୍କ ମଧ୍ୟରେ ବନମାଳୀ ମିଶ୍ର, ଦେବେନ୍ଦ୍ର ମହାନ୍ତି ପ୍ରଭୃତି ଅନ୍ୟତମ ।

*ଜୀବନର ମନ୍ଦ ଗୁଣ :*

ଅତ୍ୟନ୍ତ କ୍ଷୀଣ କୋପୀ ଓ ବଦ୍‌ରାଗୀ । କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଆଗ-ପଛ ନ ବିଚାରି ହଠାତ୍ କିଛି କରିପକାଇବା ତାଙ୍କର ଏକ ଅଭ୍ୟାସ ଥିଲା ।

*ଜୀବନରେ ଆସିଥିବା ଅନୁତପ୍ତ ସମୟ :*

ଦ୍ୱିତୀୟ ଥର ପାଇଁ ଓଳସିଂହ ଦାଶରଥି ହାଇସ୍କୁଲରେ ଯୋଗଦାନ । ସେ ତାଙ୍କ ଜୀବନୀରେ ଉଲ୍ଲେଖ କରିଛନ୍ତି - ''ମୁଁ ଟିକିଏ ଅତିମାତ୍ରାରେ ଭାବ ପ୍ରବଣ । ସାମାନ୍ୟ ଘଟଣାରେ ବିଚଳିତ ହୋଇ ଯାହା କିଛି ଗୋଟାଏ କରି ପକାଏ । ପରିଣାମରେ କଷ୍ଟ ଭୋଗ କରିଥାଏ । ଅନେକ ଘଟଣାରେ କଚଡା ଖାଇ ମଧ୍ୟ ମୁଁ ମୋର ସେହି ପ୍ରକୃତି ଛାଡ଼ି ପାରି ନାହିଁ । ଏବେ ଏହି ବୃଦ୍ଧ ବୟସରେ ସୁଦ୍ଧା ମୁଁ ସେହି ପ୍ରକୃତିର ଫଳ ଭୋଗ କରୁଅଛି ।'' ('ଭୁଲ୍ ଉପରେ ଭୁଲ'; 'ସୁଅମୁହଁର ପତର' ପୃଷ୍ଠା ୧୮୦) ।

*ପ୍ରିୟ ଶିକ୍ଷକ :* ଚନ୍ଦ୍ରମୋହନ ମହାରଣା ।

*ଜୀବନରେ ଲାଭ କରିଥିବା ଶ୍ରେଷ୍ଠ ବ୍ୟକ୍ତିତ୍ୱଙ୍କ ସଂସର୍ଗ :*

(୧) ଗୋପବନ୍ଧୁ ଦାସ (୨) ଗୋଦାବରୀଶ ମିଶ୍ର (୩) ରାଜେନ୍ଦ୍ର ପ୍ରସାଦ (ପରବର୍ତ୍ତୀକାଳରେ ସିଏ ଭାରତର ପ୍ରଥମ ରାଷ୍ଟ୍ରପତି ହେଲେ । ତାଙ୍କ ସହିତ

ସଦାକତ୍ ଆଶ୍ରମରେ ସାକ୍ଷାତ, ଆଳାପ ଓ ଖଦୀ କିଣା) (୪) ଠକ୍କର ବାପା (ଅମୃତଲାଲ୍ ଭିଠଲ୍ ଦାସ ଠକ୍କର) ୧୯୧୮-୧୯ (୫) ଆନି ବେସାନ୍ତଙ୍କ ଭାଷଣ ଶୁଣିଛନ୍ତି (୬) ସାର୍ ଆଶୁତୋଷ ମୁଖାର୍ଜୀ (Tiger of Bengal) (୭) ଲାଲା ଲଜ୍‌ପତ୍ ରାୟ (Lion of the Punjab) ୧୯୨୫-୨୬ ।

*ଜୀବନରେ ପାଇଥିବା ଶ୍ରେଷ୍ଠ ସମ୍ମାନ ଓ ପୁରସ୍କାର :*

୧୯୭୨ ମସିହାରେ ଉତ୍କଳ ସାହିତ୍ୟ ସମାଜ ତରଫରୁ ସମ୍ମାନ, ୧୯୭୪ ମସିହାରେ ସୋଭିଏତ୍ ଲ୍ୟାଣ୍ଡ୍ ନେହେରୁ ପୁରସ୍କାର ।

ଛାତ୍ରମହଲରେ ତାଙ୍କ ଉଦ୍ଦେଶ୍ୟରେ ବ୍ୟବହୃତ ଏକ ପ୍ରତୀକାତ୍ମକ ବ୍ୟଞ୍ଜନା : ଚଳନ୍ତି ଜ୍ଞାନକୋଷ ।

*କଟକ ଦେଉଳ ସାହି ପାଇଁ ଅବଦାନ :*

୧) ରଘୁନାଥଜୀଉ ବିଦ୍ୟାପୀଠ ନିର୍ମାଣ । ୧୯୭୮ ରୁ ୧୯୮୮ ମସିହା ପର୍ଯ୍ୟନ୍ତ ସେ ଥିଲେ ବିଦ୍ୟାପୀଠର ସଭାପତି ।

୨) ରଘୁନାଥଜୀଉ ବିଦ୍ୟାପୀଠ ପାଇଁ ପ୍ରସ୍ତୁତ ହୋଇଥିବା ସମ୍ବିଧାନର ସେ ଥିଲେ ଅନ୍ୟତମ ପ୍ରଣେତା ।

୩) ସ୍ୱଅର୍ଜିତ ସଂପତ୍ତିରୁ କିଛି ଯୁଟି ପାଇଁ ସାହିକୁ ଦାନ କରିଥିଲେ, ଯେଉଁ ସ୍ଥାନରେ ଆଜି ଦୁର୍ଗାମଣ୍ଡପଟିଏ ଠିଆ ହୋଇଛି ।

*ସାହିତ୍ୟ କୃତି :*

ସ୍ୱରଚିତ ବିଭିନ୍ନ ରଚନାବଳୀ । ଶ୍ରୀଧର ଦାସ ସାହିତ୍ୟର ବିଭିନ୍ନ ବିଭାଗରେ ସ୍ୱଲେଖନୀ ଚାଳନା କରି ଯାଇଛନ୍ତି । ଓଡ଼ିଆ ସାହିତ୍ୟର ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ତାଙ୍କ ରଚନାବଳୀର ଏକ ପୂର୍ଣ୍ଣ ତାଲିକା ନିମ୍ନରେ ଦିଆଗଲା ।

*ଅଭିଧାନ :*

୧) ନବ ଅଭିଧାନ (ଓଡ଼ିଆ-ଓଡ଼ିଆ-ଇଂରାଜୀ) (୨ୟ ସଂ.) ୧୯୭୬, ପ୍ରକାଶକ- ଗ୍ରନ୍ଥ ମନ୍ଦିର, କଟକ -୨

୨) Student's English Oriya Dictionary

୩) ବିବିଧ କୋଷ (ଅନ୍ୟ ଲେଖକଙ୍କ ସାହାଯ୍ୟରେ) ପ୍ରକାଶକ - ଗ୍ରନ୍ଥ ମନ୍ଦିର, କଟକ-୨

*ବ୍ୟାକରଣ :*

୧) ଲଘୁ ବ୍ୟାକରଣ
୨) ସଂସ୍କୃତ ବ୍ୟାକରଣ ପ୍ରବେଶ (ଅନ୍ୟ ଲେଖକଙ୍କ ସହାୟତାରେ)
୩) ମଧ୍ୟ ବ୍ୟାକରଣ (ଅନ୍ୟ ଲେଖକଙ୍କ ସହାୟତାରେ)
୪) ସଂସ୍କୃତ ବ୍ୟାକରଣ ଓ ରଚନା (ଅନ୍ୟ ଲେଖକଙ୍କ ସହାୟତାରେ)
୫) ସର୍ବସାର ବ୍ୟାକରଣ (୧ମ ସଂ.) ୧୯୪୩
୬) ସରଳ ଓଡ଼ିଆ ବ୍ୟାକରଣ ଓ ରଚନା (ଅନ୍ୟ ଜଣଙ୍କ ସାହାଯ୍ୟରେ)
୭) ମୌଳିକ ଲଘୁ ବ୍ୟାକରଣ ଓ ରଚନା (ଅନ୍ୟ ଜଣଙ୍କ ସାହାଯ୍ୟରେ)
୮) ମୌଳିକ ମଧ୍ୟ ବ୍ୟାକରଣ ଓ ରଚନା (ଅନ୍ୟ ଜଣଙ୍କ ସାହାଯ୍ୟରେ)
୯) ସରଳ ସଂସ୍କୃତ ବ୍ୟାକରଣ
୧୦) ମଧ୍ୟ ଓଡ଼ିଆ ବ୍ୟାକରଣ - ୧ମ ଭାଗ ଓ ୨ୟ ଭାଗ

*ଅନ୍ୟାନ୍ୟ ପାଠ୍ୟ ପୁସ୍ତକ :*

୧) ମନୋହର ପାଠ – ୧ମ ଭାଗ ଓ ୨ୟ ଭାଗ (ମଞ୍ଜୁରୀପ୍ରାପ୍ତ)
୨) ପାଠ୍ୟ ପ୍ରଦୀପ – ୩ୟ ଓ ୪ର୍ଥ ଭାଗ (ମଞ୍ଜୁର ହୋଇନଥିଲା)
୩) କଥାମାଳା (ଅନ୍ୟ ଦୁଇଜଣଙ୍କ ସହାୟତାରେ)
୪) କଥା ସୁମନ (୧ମ ଭାଗ, ମଞ୍ଜୁରୀପ୍ରାପ୍ତ)
୫) କଥା ସୁମନ (୨ୟ ଭାଗ, ମଞ୍ଜୁରୀପ୍ରାପ୍ତ)
୬) ଆମ ଦେଶର ଇତିହାସ ଗପ (୧ମ ଓ ୨ୟ ଭାଗ । ଅନ୍ୟ ଦୁଇଜଣଙ୍କ ସହାୟତାରେ)
୭) ମଞ୍ଜୁଷା, ୮ମ ଶ୍ରେଣୀ ପାଇଁ (ମଞ୍ଜୁରୀପ୍ରାପ୍ତ)
୮) ଜୀବନୀ ବର୍ତ୍ତିକା, ୮ମ ଶ୍ରେଣୀ ପାଇଁ (ଅନ୍ୟ ଲେଖକଙ୍କ ସହାୟତାରେ/ ମଞ୍ଜୁରୀ ପ୍ରାପ୍ତ)
୯) ପଞ୍ଚପ୍ରଦୀପ (ମଞ୍ଜୁରୀପ୍ରାପ୍ତ)
୧୦) ଅଳଂକାର ମଂଜରୀ (ଅଳଙ୍କାର)

*ପାଠ୍ୟ ପୁସ୍ତକ ବିଷୟକ :*

୧) ସାହିତ୍ୟ ମୁକୁର (୧ମ ଭାଗ ଓ ୨ ଭାଗ)
୨) ପାଠ କଳିକା (୧ମ ଓ ୨ୟ ଭାଗ) (ଅନ୍ୟ ଲେଖକଙ୍କ ସହାୟତାରେ)

୩) ପାଠ କୁସୁମ (ଅନ୍ୟମାନଙ୍କ ସହାୟତାରେ)
୪) ନୂତନ ସାହିତ୍ୟ ସଂଗ୍ରହ (୮ମ ଶ୍ରେଣୀ ପାଇଁ ମଞ୍ଜୁରୀପ୍ରାପ୍ତ, ଅନ୍ୟଲେଖକଙ୍କ ସହାୟତାରେ)
୫) Tales of Utkal
୬) ନବ ଇତିହାସ (୧ମ ଓ ୨ୟ ଭାଗ)
୭) ନବ ଭୂଗୋଳ (୧ମ ଓ ୨ୟ ଭାଗ)

*ଅନୁବାଦ :*

୧) ପୃଥିବୀ ପାଇଁ ଜଳ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୨) ଶାନ୍ତିପଥର ବୀର ସୈନିକ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୩) ଜର୍ଜ ଓ ଏଷ୍ଟିଙ୍ଗ୍ ହାଉସ୍ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୪) ମାର୍କିନ୍ ରାଷ୍ଟ୍ରରେ ଏକ ସଂଖ୍ୟାଲଘୁ ସଂପ୍ରଦାୟ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୫) ଭିଏତ୍‌ନାମ୍ ଯୁଦ୍ଧ କାହିଁକି ? (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୬) ଭିଏତ୍ କଙ୍ଗ୍ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୭) ଶିବାନୀ ପଲ୍ଲୀର କଳା ଚିତାବାଘ
୮) ବୃକ୍ଷ ଜଗତ (N.B.T. ଆନୁକୂଲ୍ୟରେ ପ୍ରକାଶିତ)
୯) ଆଲିବାବା
୧୦) ଦିବ୍ୟଚକ୍ଷୁ (N.B.T. ଆନୁକୂଲ୍ୟରେ ପ୍ରକାଶିତ)
୧୧) ଭାରତର ଅର୍ଥନୈତିକ ଇତିହାସ (Indian Council of Historical Research ଆନୁକୂଲ୍ୟରେ)
୧୨) ରବିନ୍ ହୁଡ୍
୧୩) ବିଚିତ୍ର କାହାଣୀ

୧୪) ଲିଓ ଟଲଷ୍ଟୟଙ୍କ ଗଳ୍ପମାଳା
୧୫) ଅଲିଭର ଟୁଇଷ୍ଟ (ଚାର୍ଲସ୍ ଡିକେନ୍ସ) - ୧୯୭୨
୧୬) ଗଲିଭରର ଭ୍ରମଣ କାହାଣୀ (ଏଚ.ଜି.ଓ୍ୱେଲସଙ୍କ Gauliver's Travels)
୧୭) ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ (ନୂତନ ସଂସ୍କରଣ)- ୧୯୮୦
୧୮) ଅଶିଦିନରେ ପୃଥିବୀ ପରିକ୍ରମଣ (ଜୁଲ୍ସ ଭର୍ଣ୍ଣେଙ୍କର Around the World in Eighty Days )
୧୯) ବିଚିତ୍ର ତାବିଜ (ସାର୍ ଓ୍ୱାଲଟର୍ ସ୍କଟଙ୍କର The Talisman) - ୧୯୭୦
୨୦) ଶେକ୍ସପିଅର୍ କାହାଣୀ-୧ମ ଭାଗ - ୧୯୭୦
୨୧) ଶେକ୍ସପିଅର୍ କାହାଣୀ-୨ୟ ଭାଗ - ୧୯୭୦
୨୨) ଶେକ୍ସପିଅର୍ କାହାଣୀ-୩ୟ ଭାଗ
୨୩) ଗ୍ରୀସ୍‌ଦେଶର ଉପକଥା
୨୪) ସମୁଦ୍ର ଗର୍ଭରେ କୋଡିଏ ହଜାର ଲିଗ୍ ଭ୍ରମଣ (ଜୁଲସ୍ ଭର୍ଣ୍ଣେଙ୍କର Twenty Thousand League) ମେ' ୧୯୭୭
୨୫) ଟମ୍ ସଏର (ମାର୍କ ଟୁଇନ୍‌ଙ୍କର Tom Sawyer)
୨୬) ଟଲଷ୍ଟୟ କାହାଣୀ-୧ମ ଭାଗ - ୧୯୭୧
୨୭) ଟଲଷ୍ଟୟ କାହାଣୀ-୨ୟ ଭାଗ
୨୮) ଟଲଷ୍ଟୟ କାହାଣୀ-୩ୟ ଭାଗ - ୧୯୮୨
୨୯) ରିପ୍‌ଭ୍ୟାନ୍ ଉଇଙ୍କିଲ୍- (ଓ୍ୱାସିଙ୍ଗ୍‌ଟନ୍‌ଇରଭିଙ୍ଗ୍‌ଙ୍କର Ripvan Winkle)- ୧୯୭୮
୩୦) ଗ୍ରୀସ୍ ଦେଶର ପୁରାଣ କାହାଣୀ - ୧୯୭୫
୩୧) ଓଏକ୍ ଫିଲଡର ଭାଇକାର (ଏଲିଭର ଗୋଲ୍‌ଡସ୍ମିଥଙ୍କର Vicar of Wakefield) ପୁର୍ନମୁଦ୍ରଣ - ୧୯୮୦
୩୨) ଗୃହୀ ଓ ସନ୍ୟାସୀ - (ଚାର୍ଲସ୍‌ରିଡଙ୍କର The Claister and the Health)- ୧୯୭୫
୩୩) ଚେକଭ୍ କାହାଣୀ - ୧୯୭୧
୩୪) ଆଇ ଭାନ୍ ହୋ - (ଓ୍ୱାଲଟର ସ୍କଟ)

୩୫) ଚନ୍ଦ୍ରକାନ୍ତ ମଣି
୩୬) ରତ୍ନଦୀପ (ଆର୍.ଏଲ୍.ଷ୍ଟିଭେନ୍‌ସନ୍‌ଙ୍କର Treasure Island) - ୧୯୭୧
୩୭) ଡେଭିଡ୍ କପର୍ ଫିଲ୍ଡ
୩୮) ଟମକକାଙ୍କ କେବିନ୍ Uncle Tom's Cabin) - ୧୯୭୨
୩୯) ହୋମର୍ କାହାଣୀ (ପୁର୍ନମୁଦ୍ରଣ) - ୧୯୭୭
୪୦) ଗର୍କି କାହାଣୀ - ୧ମ ଭାଗ - ୧୯୭୨
୪୧) ଗର୍କି କାହାଣୀ - ୨ୟ ଭାଗ - ୧୯୮୧
୪୨) ମୋପାସାଁ କାହାଣୀ - ୧ମ ଭାଗ - ୧୯୭୭
୪୩) ମୋପାସାଁ କାହାଣୀ - ୨ୟ ଭାଗ
୪୫) ମୋପାସାଁ କାହାଣୀ - ୩ୟ ଭାଗ
୪୬) ଇଶପ୍ କାହାଣୀ
୪୭) ହିତ କଥା
୪୮) ରାମାୟଣ କାହାଣୀ (ପୁର୍ନମୁଦ୍ରଣ) ୧୯୭୭
୪୯) ମହାଭାରତ କାହାଣୀ - ୧୯୭୪
୫୦) ଟାଇମ୍ ମେସିନ୍ (ଏଚ୍.ଜି.ୱେଲ୍) ୧୯୭୨
୫୧) ଶ୍ରୀ (ସାର୍ ଏଚ୍. ରାଇଡର ହଗାର୍ଡଙ୍କର She) - ୧୯୭୩ ?
୫୨) ଅହମିକା ଓ ଭ୍ରାନ୍ତି (ଜନ୍ ଅଷ୍ଟିନଙ୍କର Pride and Prejudice) ସେପ୍ଟେମ୍ବର - ୧୯୭୩
୫୩) ଜାତକ କାହାଣୀ - ୧ମ, ୨ୟ ଓ ୩ୟ ଭାଗ
୫୪) ଜାତକ କାହାଣୀ - ୪ର୍ଥ ଭାଗ - ୧୯୮୩
୫୬) ମିତ୍ରଲାଭ - ୧ ମାର୍ଦ୍ଧ - ୨ ୟାର୍ଦ୍ଧ
୫୭) ସହୃଦ ଭେଦ - ୨ୟାର୍ଦ୍ଧ
୫୮) ମିତ୍ର ଭେଦ - ୧ମ ଓ ୨ୟାର୍ଦ୍ଧ - ୧୯୭୨
୫୯) ମିତ୍ର ପ୍ରାପ୍ତି
୬୦) କାକୋଲୂକୀୟ
୬୧) ଲବ୍ଧ ପ୍ରଣୟ
୬୨) ମାଳବିକା-ଅଗ୍ନିମିତ୍ର ଓ ଉର୍ବଶୀ - ୧୯୮୦

୬୩) ବେତାଳ ପଞ୍ଚବିଂଶତି
୬୪) ବାଉଣ୍ଟି ଜାହାଜରେ ବିଦ୍ରୋହ (ଜନ୍ ବାରେଙ୍କର Mutiny on the Bounty) ନଭେମ୍ବର, ୧୯୭୨
୬୫) ରୁଷିଆ ଦେଶର ଲୋକ କାହାଣୀ
୬୬) ଆମ ଓଡ଼ିଶା କଥା
୬୭) ଅଳଙ୍କାର ପ୍ରବେଶ
୬୮) ସୁରାବ୍ ଓ ରୁସ୍ତମ (ପଦ୍ୟାନୁବାଦ)
୬୯) ଅପରୀକ୍ଷିତ କାରକ
୭୦) ପଞ୍ଚତନ୍ତ୍ର (ସଂପୂର୍ଣ୍ଣ ଗ୍ରନ୍ଥ)
୭୧) ହିତୋପଦେଶ (ସଂପୂର୍ଣ୍ଣ ଗ୍ରନ୍ଥ)
୭୨) ବିଗ୍ରହ ଓ ସନ୍ଧି
୭୩) ଶକୁନ୍ତଳା (କାଳିଦାସ) ୧୯୭୩

*ଟ୍ରାନ୍ସଲେସନ୍ :*

୧) M.E. Translation and Composition

*ସଂପାଦନା :*

୧) ରୁକ୍ମଣୀ ବିଭା
୨) ଚିଲିକା
୩) ଦରବାର
୪) ମଥୁରା ମଂଗଳ
୫) ରସ କଲ୍ଲୋଳ
୬) ବିଦଗ୍ଧ ଚିନ୍ତାମଣି
୭) ଚନ୍ଦ୍ରଭାଗା

*ଜୀବନୀ :*

୧) ଗଂଗାଧର ମେହେର
୨) ନନ୍ଦ କିଶୋର ବଳ
୩) କବିସୂର୍ଯ୍ୟ ବଳଦେବ ରଥ
୪) ସାଧୁସୁନ୍ଦର ଦାସ

*ଆତ୍ମ ଜୀବନୀ* :

ସୁଅ ମୁହଁର ପତର - ୧୯୮୨, (ଅଭିଧାନ - ୩ ଖଣ୍ଡ, ବ୍ୟାକରଣ ୧୧ ଖଣ୍ଡ, ଅନ୍ୟାନ୍ୟ ପାଠ୍ୟ ପୁସ୍ତକ - ୧୩ ଖଣ୍ଡ, ପାଠ୍ୟ ପୁସ୍ତକ ବିଷୟକ- ୧୧ ଖଣ୍ଡ, ଅନୁବାଦ - ୭୬ ଖଣ୍ଡ, ଟ୍ରାନ୍ସଲେସନ୍ -୧ ଖଣ୍ଡ, ସଂପାଦନା-୭ ଖଣ୍ଡ, ଜୀବନୀ - ୪ ଖଣ୍ଡ ଓ ଆତ୍ମଜୀବନୀ-୧ ଖଣ୍ଡ, ମୋଟ ୧୨୭ ଖଣ୍ଡ) ହେଡ଼ିଙ୍ଗ ଶ୍ରୀଧର ଦାସଙ୍କ ସଂପର୍କରେ ଅଦ୍ୟାବଧି ରଚିତ ହୋଇଥିବା ଆଲୋଚନା ପୁସ୍ତକ :

୧) ଶ୍ରୀଧର ସ୍ମରଣିକା (ପ୍ରକାଶକ : ଶ୍ରୀଧର ସ୍ମୃତି ସଂସଦ, ୧୧୧- ସହିଦ ନଗର, ଭୁବନେଶ୍ୱର-୭

୨) ଶ୍ରୀଧର ସ୍ମରଣେ (ପ୍ରକାଶକ : ରଘୁନାଥ ଜୀଉ ମହାବିଦ୍ୟାଳୟ, ଦେଉଳ ସାହି, କଟକ-୮)

ଅନୁବାଦ ବିଭାଗର କ୍ରମିକ ସଂଖ୍ୟା ୧୨ ଠାରୁ ଆରମ୍ଭ କରି କ୍ରମିକ ସଂଖ୍ୟା ୬୯ ପର୍ଯ୍ୟନ୍ତ ଉଲ୍ଲେଖ ଥିବା ମୋଟ ୫୬ ଖଣ୍ଡ ପୁସ୍ତକ 'ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳା' ଶୀର୍ଷକ ଶୃଙ୍ଖଳାକ୍ରମରେ ଗ୍ରନ୍ଥମନ୍ଦିର, କଟକ-୨ ଆନୁକୂଲ୍ୟରୁ ପ୍ରକାଶିତ । ଯଥା ସମ୍ଭବ ଏହାକୁ ବିଜ୍ଞାନ ଭିତ୍ତିକ କରିବା ପାଇଁ ଏହାର ପୂର୍ବ ପ୍ରକାଶ କାଳ ଓ କେତେକ ଗ୍ରନ୍ଥର ପ୍ରଥମ ପ୍ରକାଶ କାଳକୁ ଉଲ୍ଲେଖ କରାଯାଇଛି । ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳାର ଅନ୍ୟାନ୍ୟ ପୁସ୍ତକ ଗୁଡ଼ିକ, ଯେଉଁଥିରେ ପ୍ରକାଶ କାଳ ଉଲ୍ଲେଖ କରାଯାଇ ନାହିଁ, ବର୍ତ୍ତମାନ ତାହାର ନୂତନ ସଂସ୍କରଣ ପ୍ରକାଶ ପାଇଛି । ଏତଦ୍ ବ୍ୟତୀତ 'ନବ ଅଭିଧାନ' ଓ 'ବିବିଧ କୋଷ' ପ୍ରଭୃତି କେତେକ ପୁସ୍ତକ ମଧ୍ୟ ନୂତନ ସଂସ୍କରଣ ଭାବରେ ଏବେ ପ୍ରକାଶ ପାଇ ସାରିଛି ।



୧୯୫୧
ଅଭ୍ୟୁଦୟ ସାହିତ୍ୟ ସମିତି



ଆଗରେ ବସିଛନ୍ତି : ବାନାମ୍ବର ଆଚାର୍ଯ୍ୟ, ଶ୍ରୀନିବାସ ମିଶ୍ର, ପଠାଣି ପଟ୍ଟନାୟକ, ଶ୍ରୀଧର ଦାସ
(ପଛରେ ଅନ୍ୟମାନଙ୍କ ମଧ୍ୟରେ ଜଗନ୍ନାଥ ପ୍ରସାଦ ଦାସ)

୧୯୪୭



ଖ୍ରୀଷ୍ଟ କଲେଜର ଅଧ୍ୟାପକମାନଙ୍କ ସହ

୧୯୬୦

ପଣ୍ଡିତ ବିନାୟକ ମିଶ୍ରଙ୍କ ସହ

୧୯୬୨



ଶ୍ରୀଧର ଦାସ ଓ ପତ୍ନୀ ଇନ୍ଦୁ ଦେବୀ

